# ଓଡ଼ିଶା ବିଧାନସଭାରେ ମାନ୍ୟବର ରାଜ୍ୟପାଳ ଡକ୍ଟର ଏସ୍.ସି. ଜମିରଙ୍କ ଅଭିଭାଷଣ



**ବାଚସ୍ପତି ମହୋଦୟ ଓ ମାନ୍ୟବର ସଭ୍ୟବୃନ୍ଦ,**

ପ୍ରାରମ୍ଭରୁ ଆପଣମାନଙ୍କୁ ନିଜ ନିଜର ଅଭୂତପୂର୍ବ ରାଜନୈତିକ ସଫଳତା ପାଇଁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇ ସମସ୍ତଙ୍କୁ ଆନ୍ତରିକତାର ସହିତ ପଞ୍ଚଦଶ ଓଡ଼ିଶା ବିଧାନସଭାର ପ୍ରାରମ୍ଭିକ ଅଧିବେଶନକୁ ସ୍ୱାଗତ କରୁଅଛି । ଏହି ଅଧିବେଶନ ଏବଂ ସମୟାନ୍ତରରେ ଅନୁଷ୍ଠିତ ହେବାକୁ ଥିବା ଅନ୍ୟାନ୍ୟ ଅଧିବେଶନଗୁଡ଼ିକ ବେଶ୍ ଗଠନମୂଳକ ତଥା ଫଳପ୍ରଦ ହେବ ବୋଲି ମୁଁ ବେଶ୍ ଆଶାବାଦୀ ।

**୧.** ଏହି ପବିତ୍ର ଗୃହ ରାଜ୍ୟର ଉନ୍ନତିରେ ଉଲ୍ଲେଖନୀୟ ଅବଦାନ ରହିଥିବା ଏହି ପବିତ୍ର ଗୃହର ପୂର୍ବତନ ସଦସ୍ୟ ସ୍ୱର୍ଗତଃ ମନମୋହନ ମାଥୁରଙ୍କ ଦୁଃଖଦ ବିୟୋଗରେ ଗଭୀର ଶୋକ ପ୍ରକାଶ କରିଅଛି । ଏହି ପବିତ୍ର ଗୃହର ପୂର୍ବତନ ବାଚସ୍ପତି ସ୍ୱର୍ଗତଃ ଯୁଧିଷ୍ଠିର ଦାସ, ପୂର୍ବତନ ସଦସ୍ୟ ସ୍ୱର୍ଗତଃ ବାସୁଦେବ ମାଝି, ଦିବାକର ଶର୍ମା, ମହେଶ୍ୱର ମାଝି, ହରିହର ସାହୁ, କହ୍ନେଇ ସିଂ ଓ ସ୍ୱର୍ଗତଃ ନନ୍ଦକିଶୋର ଜେନା, ୧୨୦ ଇନ୍‌ଫାଣ୍ଟ୍ରି ବାଟାଲିୟନ ବିହାରର ପୂର୍ବତନ ସିପାହୀ ସ୍ୱର୍ଗତଃ ପ୍ରକାଶ କୁମାର ଶାହାଣି ଓ ସ୍ୱର୍ଗତଃ ସୌମ୍ୟରଞ୍ଜନ ଧିରସାମନ୍ତ, ପୂର୍ବତନ ଲେଫଟ୍‌ନାଣ୍ଟ ମିଲିଟାରୀ ହସ୍‌ପାତାଳ, ଆମ୍ବାଲାକାଣ୍ଟ ଯେଉଁମାନେ କି ଇତିମଧ୍ୟରେ ଆମଠାରୁ ବିଦାୟ ନେଇଛନ୍ତି, ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପାଇଁ ମୋ ସହିତ ଯୋଗ ଦେବାକୁ ମୁଁ ମାନ୍ୟବର ସଦସ୍ୟମାନଙ୍କୁ ଅନୁରୋଧ କରୁଛି । ଦିବଂଗତ ସଦସ୍ୟମାନଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ଉଦ୍ଦେଶ୍ୟରେ ଏହି ପବିତ୍ର ଗୃହ ମାଧ୍ୟମରେ ଆମେ ସଭିଏଁ ଆମ୍ଭମାନଙ୍କର ହୃଦୟର ଗଭୀରତମ ପ୍ରଦେଶରୁ ଆନ୍ତରିକ ସମବେଦନା ଜଣାଉଛୁ ।

**୨.** ଆପଣମାନଙ୍କୁ ମୁଁ ମୋ ପୂର୍ବ ଅଭିଭାଷଣ ଉପସ୍ଥାପନ କାଳରେ ଆମ ରାଜ୍ୟର ଜନସାଧାରଣଙ୍କର ବର୍ଦ୍ଧିଷ୍ଣୁ ଉଚ୍ଚାକାଙ୍‌କ୍ଷା ଏବଂ କିଭଳି ସାମାଜିକ ବର୍ଗ, ସାମ୍ପ୍ରଦାୟିକତା ତଥା ଆଞ୍ଚଳିକତାର ବହୁ ଉର୍ଦ୍ଧ୍ୱରେ ସେମାନେ ଏକ ଉନ୍ନତମାନର ଜୀବନଯାପନ ନିମନ୍ତେ ଉତ୍କଣ୍ଠିତ ସେ ସମ୍ପର୍କରେ ସମ୍ୟକ ସୂଚନା ଦେଇଥିଲି । ସୂଚନା ଏବଂ ଯୋଗାଯୋଗ କ୍ଷେତ୍ରରେ ପ୍ରଯୁକ୍ତି ମାଧ୍ୟମରେ ଅଣାଯାଇଥିବା ବୈପ୍ଳବିକ ପରିବର୍ତ୍ତନ ତଥା ଯୁଗାନ୍ତକାରୀ ଉଦ୍ଭାବନ ସମୂହ ସୂଚନା ପ୍ରାପ୍ତି ଉପାୟକୁ ସାର୍ବଜନୀନ ତଥା ସମୟୋପଯୋଗୀ କରିପାରିଛି । ଆମ ଲୋକେ ଆଉ ତାଙ୍କ ନିଜ ଚତୁର୍ଦ୍ଦିଗରେ ଘଟୁଥିବା ପ୍ରଗତି ପ୍ରତି ପ୍ରତିକ୍ରିୟାରହିତ ହୋଇ ନୀରବଦ୍ରଷ୍ଟା ସାଜି ବସିରହି ନାହାଁନ୍ତି, ପରନ୍ତୁ ତଥ୍ୟଭିଜ୍ଞ ହୋଇ ଗଠନମୂଳକ ତଥା ସୃଜନାତ୍ମକ ଭାବରେ ପ୍ରଗତିର ଧାରାରେ ସାମିଲ ହେବା ପାଇଁ ଆଗ୍ରହ ପ୍ରକାଶ କରିବା ସହିତ ସମାନୁପାତିକ ଭାବରେ ଏଥିରୁ ମିଳୁଥିବା ସୁବିଧାସୁଯୋଗର ଅଂଶୀଦାର ହେବା ପାଇଁ ତତ୍ପର ।

**୩.** ଏହି ପବିତ୍ର ଗୃହରେ ଥାଇ ଆମେ ସମସ୍ତେ କ୍ରମଶଃ ଦୃଢ଼ତାର ସହିତ ନିଜକୁ ଉପସ୍ଥାପିତ କରୁଥିବା ସକ୍ରିୟ ନାଗରିକତ୍ୱକୁ ସ୍ୱାଗତ କରିବା ଏବଂ ଏଭଳି ଏକ ମାର୍ଗରେ ଆମ ଜନସାଧାରଣଙ୍କ ସମ୍ମିଳିତ ଶକ୍ତିର ବିନିଯୋଗ କରିବା ଯାହାଦ୍ୱାରା ଏମିତି ଏକ ସମାଜର ପୁନଃପ୍ରତିଷ୍ଠା ହେବ ଯେଉଁଠି ପ୍ରତ୍ୟେକ ବ୍ୟକ୍ତି ନିଜ ଲକ୍ଷ୍ୟ ହାସଲ କରିବା ପାଇଁ ତଥା ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରକୃତରେ ସମର୍ଥ ହେବେ ଏବଂ ଅନ୍ୟ କାହାରି ଉପରେ ବୋଝ ନହୋଇ ନିଜେ ନିଜର ଆକାଂକ୍ଷା ପୂରଣ କରିପାରିବେ ।

**୪.** ଏକ ସଚେତନ, ସତର୍କ ତଥା ସଜାଗ ସମାଜର ଜନସାଧାରଣ ଏହି ପବିତ୍ର ଗୃହର ଆମ ସମସ୍ତଙ୍କ ପାଇଁ ଏକ ଅନନ୍ୟ ଆହ୍ୱାନ ତଥା ଅସୀମିତ ସୁଯୋଗ ସଦୃଶ । ଆମେ ଏହି ଉଦ୍‌ବେଳନକୁ ସାମଗ୍ରିକ ସୁବିଧା ସୁଯୋଗ ହାସଲ କରିବା ପାଇଁ ଉପଯୋଗୀ ହେବା ନିମନ୍ତେ ସଠିକ୍ ଦିଗ୍‌ଦର୍ଶନ ଦେଇ ନୂତନ ମାର୍ଗ ସମୂହର ଅବଧାରଣା କରାଇବା ଯାହା ଆମ ରାଜ୍ୟର ଜନସାଧାରଣଙ୍କର

ସଂଖ୍ୟାତୀତ ଆକାଂକ୍ଷା ସମୂହ ଏଭଳି ଭାବରେ ପୂରଣ କରିପାରିବ ଏବଂ ଏକ ନ୍ୟାଯ୍ୟ, ସାମଗ୍ରିକ ତଥା ନିରପେକ୍ଷ ସମାଜ ଗଠନ ନିମନ୍ତେ ଉଦ୍ଦିଷ୍ଟ ଆମ ଯାତ୍ରାପଥକୁ ସୁଦୃଢ଼ କରିବ ।

**୫.** ୨୦୦୦ ମସିହାରେ କ୍ଷମତାସୀନ ହେଲାବେଳେ ଆମେ ନିଜ ପାଇଁ ଏଭଳି ଏକ ଆହ୍ୱାନ ଆମ ସମ୍ମୁଖରେ ରଖିଥିଲେ ଯାହା ଆଗରୁ କେବେ କୌଣସି ରାଜନୈତିକ ବ୍ୟାଖ୍ୟାକାରଙ୍କ ମୁହଁରୁ ଶୁଣାଯାଇ ନଥିଲା, ତାହା ଓଡ଼ିଶାର ପ୍ରତିଟି କ୍ଷେତ୍ରରେ ଆମୂଳଚୂଳ ପରିବର୍ତ୍ତନ ଆଣିବା ପାଇଁ ଏଭଳି ଏକ ପଣ ଥିଲା, ଯାହାକୁ ସମସ୍ତେ ଦେଖିବେ ଏବଂ ସବୁଦିନ ପାଇଁ ମନେ ରଖିବେ । ଏହା ଓଡ଼ିଶାକୁ ଏକ ଈର୍ଷା କରିହେଉ ନଥିବା ସ୍ତରକୁ ନେଇ ଯିବା ପାଇଁ ଏକ ଆନ୍ତରିକ ଉଦ୍ୟମ ଥିଲା । ଆମେ ସେତେବେଳେ ଦ୍ୱିଧାରେ ଥିଲୁ, ଯେହେତୁ ଆମେ ଦୃଢ଼ ନିଶ୍ଚିତ ନଥିଲୁ ଯେ ଲୋକେ ଆମର ଏଇ ମହତାକାଂକ୍ଷାକୁ ସଠିକ ଭାବରେ ବୁଝିବେ, ସକାରାତ୍ମକ ଭାବରେ ଗ୍ରହଣ କରିବେ ଏବଂ ଆମେ ଏଥିପାଇଁ ଜନସାଧାରଣଙ୍କ ସକ୍ରିୟ ସହଯୋଗ ନିଶ୍ଚିତ ଭାବରେ ପାଇବୁ । ପରିବର୍ତ୍ତନୀୟ ଲକ୍ଷ୍ୟ ସମୂହ ପ୍ରତି ବିଗତ ୧୪ ବର୍ଷର ଆମ ଅବିଚଳିତ ପ୍ରତିବଦ୍ଧତା ଏବଂ ନିରବଚ୍ଛିନ୍ନ ଉଦ୍ୟମ ଶେଷରେ ମୁଁ ସଗର୍ବେ କହିବାକୁ ଚାହେଁ ଯେ ଓଡ଼ିଶା ଆଜି ନୂତନ ଶିଖର ଛୁଇଁପାରିଛି ଏବଂ ଓଡ଼ିଶାର ଜନସାଧାରଣ ପୁଣିଥରେ ଆମ କାର୍ଯ୍ୟ ଦକ୍ଷତା ଉପରେ ପୁନଃ ଆସ୍ଥା ପ୍ରକଟ କରି ଆମକୁ କ୍ରମାଗତ ଭାବରେ ୪ର୍ଥ ଥର କ୍ଷମତାକୁ ଆଣିବା ନିଃସନ୍ଦେହରେ ଆମେ ଆମ ପାଇଁ ଧାର୍ଯ୍ୟ କରିଥିବା ଲକ୍ଷ୍ୟ ତଥା ଆମେ ଯେଉଁ ଦିଗ୍‌ଦର୍ଶନ ନେଇ କାର୍ଯ୍ୟ କରୁଛୁ ତାହା ଯଥାର୍ଥରେ ପ୍ରତିପାଦନ କରୁଛି ।

**୬.** ବର୍ତ୍ତମାନର ରାଜନୈତିକ ସଫଳତା ଆମର ମନୋବଳକୁ ସୁଦୃଢ଼ କରିବା ସହିତ ପ୍ରଗତିକୁ ନୂତନ ଶିଖରରେ ପହଞ୍ଚାଇବା ପାଇଁ ପ୍ରୟାସ ଜାରି ରଖିବା ନିମନ୍ତେ ଆମକୁ ଉତ୍ସାହ ଦେଇଛି, ହେଲେ ଆମେ ଆତ୍ମସନ୍ତୁଷ୍ଟିର ଅପରିଣାମ ସମ୍ପର୍କରେ ଅବଶ୍ୟ ସଚେତନ ରହିଛୁ । ଆମ ଦୃଢ଼ ସଂକଳ୍ପର ଏକ ସ୍ୱଷ୍ଟ ସନ୍ଦେଶ ଦେବାପାଇଁ ଶପଥ ଗ୍ରହଣ ସମାରୋହ ପରେ ପରେ ମୋ ସରକାର ମନ୍ତ୍ରୀ ପରିଷଦର ପ୍ରଥମ ବୈଠକ ଡ଼କାଇ ଆମେ ଜନସାଧାରଣଙ୍କୁ ଦେଇଥିବା ପ୍ରତିଶ୍ରୁତି ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ନିୟମାନୁଯାୟୀ କାର୍ଯ୍ୟକାରୀ କରାଇବା ପାଇଁ ନୀତିଗତ ନିଷ୍ପତ୍ତି ଗ୍ରହଣ କରିଛି ।

**୭.** ମୋ ସରକାର ନିର୍ଦ୍ଧାରିତ ଅବଧି ମଧ୍ୟରେ ରାସ୍ତା ଯୋଗାଯୋଗ, ପାନୀୟ ଜଳ, ବିଦ୍ୟୁତିକରଣ, ଜଳସେଚନ, କୃଷି ଏବଂ ଶିକ୍ଷା ପ୍ରଭୃତି କ୍ଷେତ୍ରରେ ରାଜ୍ୟର ଉଭୟ ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳରେ ମୌଳିକ ଭିତ୍ତିଭୂମି ଆବଶ୍ୟକତା ପୂରଣ ନିଶ୍ଚିତ କରାଇବେ, ଯାହା ଫଳରେ ଆବଶ୍ୟକୀୟ ଭିତ୍ତିଭୂମିର ଅଭାବ ଓଡ଼ିଶାର ଜନସାଧାରଣଙ୍କର ଉନ୍ନତି ତଥା କଲ୍ୟାଣରେ ବାଧକ ହେବ ନାହିଁ ।

**୮.** ଯଦିଓ ବିଗତ କିଛି ବର୍ଷରେ କୃଷି ଏବଂ ଆନୁସାଙ୍ଗିକ କାର୍ଯ୍ୟକଳାପରେ ନିର୍ଭର କରୁଥିବା ଲୋକଙ୍କ ସଂଖ୍ୟା ସାମାନ୍ୟ ଭାବରେ ହ୍ରାସ ପାଇଛି, କୃଷି ଏବେ ମଧ୍ୟ ଆମ ଅର୍ଥନୀତିର ମେରୁଦଣ୍ଡ ସଦୃଶ ରହିଛି ଏବଂ ଆମ ଜନସଂଖ୍ୟାର ଅଧିକାଂଶ ଲୋକଙ୍କର ଜୀବନଧାରଣର ମାଧ୍ୟମ ପାଲଟିଛି ।

**୯.** କୃଷି ନିବେଶର ସଫଳ ପରିଚାଳନା ନିରନ୍ତର କୃଷି ଉତ୍ପାଦନ ଅଭିବୃଦ୍ଧିର ମୂଳମନ୍ତ୍ର । ଏ ଦିଗରେ ମୋ ସରକାର ଆସନ୍ତା ୫ ବର୍ଷ ମଧ୍ୟରେ ଅନ୍ୟୂନ ୧୦ ଲକ୍ଷ ହେକ୍ଟର ଅତିରିକ୍ତ ଜଳସେଚନ ସୁବିଧା ସୃଷ୍ଟି କରିବା ସହିତ ପ୍ରତି ପଞ୍ଚାୟତରେ ଉନ୍ନତ କିସମର ବିହନ, ସାର, ପୋକମରା ଔଷଧ, କୀଟନାଶକ ଏବଂ ଆବଶ୍ୟକୀୟ ବୈଷୟିକ କୃଷି ସମ୍ପ୍ରସାରଣ ସେବା ଯୋଗାଇ ଦେବା ଲକ୍ଷ୍ୟ ରଖିଛି । ଉତ୍ସର୍ଗୀକୃତ ଭାବରେ ସମସ୍ତ ଅଚଳ ହୋଇପଡ଼ିଥିବା ଉଠାଜଳସେଚନ ପଏଣ୍ଟ ଗୁଡ଼ିକୁ ପୁନରୁଦ୍ଧାର ତଥା କାର୍ଯ୍ୟକ୍ଷମ କରାଯିବ । ବିହନ ପ୍ରତିବଦଳ ହାର ୩୪% ପ୍ରତିଶତକୁ ବୃଦ୍ଧି କରାଯିବା ସହିତ କୃଷକମାନଙ୍କୁ ମିଳୁଥିବା ସମସ୍ତ ରିହାତି ତଥା ଆର୍ଥିକ ସହାୟତା ସିଧାସଳଖ କୃଷକମାନଙ୍କ ବ୍ୟାଙ୍କ୍ ଆକାଉଣ୍ଟକୁ ହସ୍ତାନ୍ତରିତ କରାଯିବା ପାଇଁ ଉଦ୍ୟମ ଜାରି ରହିବ ।

**୧୦.** ଅମଳ ପରବର୍ତ୍ତୀ ପ୍ରଚଳିତ ବ୍ୟବସ୍ଥାକୁ ସୁନିୟନ୍ତ୍ରିତ କରିବା ଲକ୍ଷ୍ୟରେ ମୋ ସରକାର ଧାନ ସଂଗ୍ରହଣରେ ଅଂଶ ଗ୍ରହଣ କରୁଥିବା ଜିଲ୍ଲାମାନଙ୍କରେ ପ୍ରତି ୫୦୦୦ ଜନସଂଖ୍ୟା ପାଇଁ ଏକ ମଣ୍ଡି ସ୍ଥାପନ କରିବା ସହିତ ଧାନ ଶୁଖାଇବା ଏବଂ ଅମଳ ପାଇଁ କଂକ୍ରିଟ ଅଗଣା ବ୍ୟବସ୍ଥା କରିବ । ପ୍ରତି ପଞ୍ଚାୟତରେ ସଂରକ୍ଷଣ ଭିତ୍ତିଭୂମି ସୃଷ୍ଟି କରାଯିବା ଲକ୍ଷ୍ୟରେ ଏକ ବିଶଦ ପଣ୍ୟାଗାର ଅଧିନିୟମ ପ୍ରଣୟନ କରାଯିବ ଏବଂ ରାଜ୍ୟର ପ୍ରତ୍ୟେକ ବ୍ଲକରେ ରିହାତି ପ୍ରଦାନ ସହିତ ସରକାରୀ–ଘରୋଇ ସହଭାଗିତା ଭିତ୍ତିରେ ଶୀତଳ ଭଣ୍ଡାର ପ୍ରତିଷ୍ଠା କରାଯିବ । କେବିକେ ଅଞ୍ଚଳରେ ଦ୍ୱିତୀୟ କୃଷି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରାଯାଇ କୃଷି ପାଇଁ ଆବଶ୍ୟକ ଶିକ୍ଷିତ ମାନବ ସମ୍ବଳ ସୃଷ୍ଟି କରାଯିବା ସହିତ କୃଷିରେ ହାସଲ କରାଯାଇଥିବା ବୈଷୟିକ ଅଗ୍ରଗତିର ସୁଫଳ ପଛୁଆ ଅଞ୍ଚଳର କୃଷକବର୍ଗଙ୍କୁ ପ୍ରଦାନ କରାଯାଇପାରିବ । ଟ୍ରାକ୍ଟରରେ ବ୍ୟବହୃତ ହେଉଥିବା ଟ୍ରଲି ଉପରୁ ଟିକସ ଛାଡ଼ କରିବା ପାଇଁ ମଧ୍ୟ ମୋ ସରକାର ନିଷ୍ପତ୍ତି କରିଅଛି ।

**୧୧.** ମୋ ସରକାର ଆର୍ଥିକ ସହାୟତା ଯୋଗାଇ ଦେଇ କଚ୍ଚା ଘରଗୁଡ଼ିକୁ ପର୍ଯ୍ୟାୟ କ୍ରମେ ପକ୍କାଘରରେ ପରିଣତ କରାଯିବା ପାଇଁ ସମସ୍ତ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିବେ ।

**୧୨.** ସୁସ୍ଥ ମଣିଷଙ୍କୁ ନେଇ ସୁସ୍ଥ ସମାଜ ଗଠିତ ହୁଏ ଯାହା ପ୍ରକାରାନ୍ତରେ ସମୃଦ୍ଧିକୁ ଗତିଶୀଳ କରାଇଥାଏ । ମୋ ସରକାର ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ମାଗଣା ଜରୁରିକାଳୀନ ଆମ୍ବୁଲାନ୍ସ ସେବା, ୫୫ ଲକ୍ଷ କୃଷକ ପରିବାର ପାଇଁ ମାଗଣା ସ୍ୱାସ୍ଥ୍ୟବୀମା ସୁବିଧା ତଥା ଓଡ଼ିଶା ରାଜ୍ୟ ଚିକିତ୍ସା ପାଣ୍ଠି ସ୍ଥାପନା କରି ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଉଚ୍ଚ ମାନ ନିର୍ଦ୍ଧାରଣ କରିପାରିଛି । ସୁସ୍ଥ ଓଡ଼ିଶା ଗଠନ ଦିଗରେ ଆମ ପ୍ରତିବଦ୍ଧତାକୁ ଆଗେଇ ନେବା ପାଇଁ ମୋ ସରକାର ଓଡ଼ିଶା ମେଡ଼ିକାଲ କର୍ପୋରେସନ୍ ଜରିଆରେ ଔଷଧ ଯୋଗାଣ କରିବା ସହିତ ସ୍ୱାସ୍ଥ୍ୟ ବୀମା ସୁବିଧାକୁ ସାର୍ବଜନୀନ କରାଯାଇ ଏହା ଯେଭଳି ଉଭୟ ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳରେ ବସବାସ କରୁଥିବା ସବୁ ବର୍ଗର ଲୋକଙ୍କୁ ମିଳିପାରିବ ସେଥିପାଇଁ ଚେଷ୍ଟିତ ହେବ । ମୋ ସରକାର ମଧ୍ୟ ଓଡ଼ିଶା ରାଜ୍ୟ ଚିକିତ୍ସା ପାଣ୍ଠି ଏବଂ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଡାକ୍ତରୀ ଚିକିତ୍ସା ପାଇଁ ମିଳୁଥିବା ଚିକିତ୍ସା ସହାୟତା ରାଶି ବୃଦ୍ଧି କରାଇବ ।

**୧୩.** ଉଭୟ ଶାରୀରିକ ଏବଂ ଆର୍ଥିକ ଦୃଷ୍ଟିରୁ ଖାଦ୍ୟ ସୁରକ୍ଷା ନିଶ୍ଚିତ କରିବାରେ ଉଲ୍ଲେଖନୀୟ ଅଗ୍ରଗତି ହାସଲ କରିବା ପରେ ମୋ ସରକାର ଏବେ ସାଧାରଣ ବଣ୍ଟନ ବ୍ୟବସ୍ଥାର ପରିସର ବୃଦ୍ଧି କରାଇ ଏହାକୁ ବ୍ୟାପକ ଏବଂ ସାର୍ବଜନୀନ କରାଇବା ପାଇଁ ସିଦ୍ଧାନ୍ତ ଗ୍ରହଣ କରିଛି ।

**୧୪.** ଶିକ୍ଷା କ୍ଷେତ୍ରରେ ଈପ୍ସିତ ଲକ୍ଷ୍ୟ ହାସଲ କରାଯାଇ ସାରିବା ପରେ ମୋ ସରକାର ଅଧୁନା ଗୁଣାତ୍ମକ ଶିକ୍ଷାର ବିକାଶ ଉପରେ ନିଜର ସମସ୍ତ ଧ୍ୟାନ କେନ୍ଦ୍ରୀଭୂତ କରିବ । ପ୍ରତି ବ୍ଲକରେ ମଡ଼େଲ ପବ୍ଲିକ୍ ସ୍କୁଲ ସ୍ଥାପନ ସହିତ ପଞ୍ଚାୟତ ସ୍ତରରେ ଥିବା ହାଇସ୍କୁଲ ଗୁଡ଼ିକର ଭିତ୍ତିଭୂମି ଅଭାବ ଦୂର କରାଯିବ । ମେଧା ତଥା ସାମାଜିକ କ୍ଷେତ୍ର ଭିତ୍ତିରେ ମିଳୁଥିବା ଛାତ୍ରବୃତ୍ତି ସଂଖ୍ୟା ବୃଦ୍ଧି କରାଯିବ । ମୋ ସରକାର ପିଲାମାନଙ୍କର ବୈଷୟିକ ତଥା ବୃତ୍ତିଗତ ଶିକ୍ଷା ପାଇଁ ଶିକ୍ଷା ଋଣ ନେଉଥିବା ମାତାପିତାଙ୍କ ବୋଝ ହାଲୁକା କରିବା ପାଇଁ ଶିକ୍ଷା ଋଣରେ ସୁଧ ରିହାତି ପ୍ରଦାନ କରିବେ । ଯେ କୌଣସି ଜାତୀୟ ଅନୁଷ୍ଠାନରେ ଶିକ୍ଷାଲାଭ କରିବା ପାଇଁ ଯୋଗ୍ୟ ବିବେଚିତ ହେଉଥିବା ଅନୁସୂଚିତ ଜାତି ଏବଂ ଜନଜାତି ବର୍ଗର ଛାତ୍ରଛାତ୍ରୀମାନଙ୍କର ଶିକ୍ଷା ବାବଦ ସମସ୍ତ ଖର୍ଚ୍ଚ ସରକାର ବହନ କରିବେ । ସହରାଞ୍ଚଳରେ ସଂଖ୍ୟାଧିକ ଛାତ୍ରୀ ବାସ ନିର୍ମାଣ କରାଯିବ ଏବଂ ମାଗଣା ସାଇକେଲ ଦଶମ ଶ୍ରେଣୀର ସବୁ ଛାତ୍ରଛାତ୍ରୀଙ୍କୁ ଯୋଗାଇ ଦିଆଯିବ ।

**୧୫.** ଆମେ ସମସ୍ତେ ଯେତେବେଳେ ଗର୍ବର ସହିତ ଏହା ପ୍ରକାଶ କରୁଛେ ଯେ ଆମ ସମାଜର ଏକ ପ୍ରଭାବଶାଳୀ ଅଂଶ ଭାବରେ ଆମ ରାଜ୍ୟରେ ଯୁବଶକ୍ତିର ଅଭ୍ୟୁଦୟ ଘଟିଥିବା ହେତୁ ଆମ ସମାଜ ସବୁଠୁ ସୁବିଧାଜନକ ସ୍ଥିତିରେ ଅଛି, ସେତେବେଳେ ଆମେ ସଭିଏଁ ଏ ବିଷୟରେ ଅବଶ୍ୟ ସଚେତନ ହେବା ଆବଶ୍ୟକ ଯେ ଏହି ଶକ୍ତିର ସୁବିନିଯୋଗ ନହେଲେ ଏ ଜନିତ ସମସ୍ତ ସମ୍ଭାବ୍ୟ ସୁବିଧା ଅବିଳମ୍ବେ ସବୁଠୁ ବଡ଼ ବିପର୍ଯ୍ୟୟରେ ପରିଣତ ହୋଇଯାଇପାରେ । ମୁଁ ସଗର୍ବେ ଏହି ପବିତ୍ର ଗୃହକୁ ସୂଚିତ କରିବାକୁ ଚାହେଁ ଯେ ମୋ ସରକାର ଏହି ଆହ୍ୱାନକୁ ହୃଦୟଙ୍ଗମ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରି ଏକ ସାମଗ୍ରିକ ତଥା ପ୍ରଗତିକାମୀ ଯୁବନୀତି ପ୍ରଣୟନ କରିଛି । ମୋ ସରକାର ଏକ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ଯୁବନୀତିର ସମସ୍ତ ଦୃଷ୍ଟିଭଙ୍ଗୀ ଗୁଡ଼ିକୁ କାର୍ଯ୍ୟକାରୀ କରାଇ ଆମ ଯୁବଶକ୍ତି ଯେଭଳି ଓଡ଼ିଶାର ଅଭିବୃଦ୍ଧି ଏବଂ ପ୍ରଗତିରେ ସକ୍ରିୟ ଅଂଶ ଗ୍ରହଣ କରିପାରିବ ତାହା ନିଶ୍ଚିତ କରାଇବ । ଏହା କାର୍ଯ୍ୟକାରୀ କରାଯିବା ବେଳେ ବାଳିକା ଏବଂ ଅନ୍ୟ ଆପଦଗ୍ରସ୍ତ ଶ୍ରେଣୀର ସର୍ବାଙ୍ଗୀନ ଉନ୍ନତି ପାଇଁ ସ୍ୱତନ୍ତ୍ର ଧ୍ୟାନ ଦିଆଯିବ । ମହାବିଦ୍ୟାଳୟମାନଙ୍କରେ ଉପଯୁକ୍ତ ବୃତ୍ତି ଚୟନ ନିମନ୍ତେ ପରାମର୍ଶ ସୁବିଧା, ଜିଲ୍ଲା ସ୍ତରରେ ନିଯୁକ୍ତି ମେଳା ଏବଂ ଯୁବ ଉତ୍ସବ, ସର୍ବଭାରତୀୟ ସ୍ତରର ପ୍ରତିଯୋଗିତାମୂଳକ ପରୀକ୍ଷା ନିମନ୍ତେ ଆମ ଯୁବକଯୁବତୀମାନଙ୍କୁ ପ୍ରସ୍ତୁତ କରାଇବା ପାଇଁ ରାଜ୍ୟର ୩ଟି ପ୍ରମୁଖ ସ୍ଥାନରେ କୋଚିଂ ସେଣ୍ଟର ସ୍ଥାପନ ଭଳି ଅନେକ ଗୁଡ଼ିଏ ମଧ୍ୟବର୍ତ୍ତିତା ମୋ ସରକାର କାର୍ଯ୍ୟକାରୀ କରାଇବ ।

**୧୬.** ପାରିବାରିକ ସଂସ୍କୃତିର ସୁରକ୍ଷା ତଥା ସାମାଜିକ ସଂହତି ବଜାୟ ରଖିବା ନିମନ୍ତେ ମହିଳା ସଶକ୍ତିକରଣକୁ ଏକ ସାଧନ ଭାବରେ ବ୍ୟବହାର ମୋ ସରକାରଙ୍କ ପାଇଁ ମୂଳମନ୍ତ୍ର ସଦୃଶ ହୋଇପାରିଛି । ମହିଳା ସଶକ୍ତିକରଣ ନିମନ୍ତେ ଅବଲମ୍ବନ କରାଯାଉଥିବା ମଧ୍ୟବର୍ତ୍ତିତା ସମୂହର ପରିସର ଆହୁରି ବୃଦ୍ଧି କରାଇବା ପାଇଁ ମୋ ସରକାର ଶୀଘ୍ର ଏକ ସାମଗ୍ରିକ 'ମହିଳା ନୀତି' ନିର୍ଦ୍ଧାରଣ କରିବାକୁ ଯାଉଛି ଯାହା ସାମଗ୍ରିକ ସାମାଜିକ ଏବଂ ଅର୍ଥନୈତିକ ସଶକ୍ତିକରଣ ମଧ୍ୟରେ ରହିଥିବା ବ୍ୟବଧାନ ହ୍ରାସ କରାଇବାରେ ସହାୟକ ହେବ । ମିଶନ ଶକ୍ତି ଆନ୍ଦୋଳନରେ ସାମିଲ ହୋଇଥିବା ଓଡ଼ିଶାର ସେହି ଅଗଣିତ ମହିଳାମାନଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ତଥା ଏହି ଆନ୍ଦୋଳନରେ ସଂଖ୍ୟାଧିକ ମହିଳାମାନଙ୍କୁ ଯୋଗଦାନ କରିବା ନିମନ୍ତେ ପ୍ରୋତ୍ସାହିତ କରିବା ଲକ୍ଷ୍ୟରେ ମୋ ସରକାର ମହିଳା ସ୍ୱୟଂ ସହାୟକ ଦଳମାନଙ୍କୁ ମିଳୁଥିବା ଋଣ ଉପରେ ସୁଧହାର ୧ ବର୍ଷ ସମୟସୀମା ମଧ୍ୟରେ ଆହୁରି ହ୍ରାସ କରିବା ପାଇଁ ଉଦ୍ୟମ କରିବ ।

**୧୭.** ମୋ ସରକାରଙ୍କ ଉନ୍ନୟନମୂଳକ କାର୍ଯ୍ୟସୂଚୀର ସର୍ବାଗ୍ରେ ସର୍ବଦା ପଛୁଆ ବର୍ଗଙ୍କ ସଶକ୍ତିକରଣ ରହିଥାଏ । ମୋ ସରକାର ଏ ଦିଗରେ ଏଭଳି କିଛି ଅଗ୍ରଣୀ ପଦକ୍ଷେପ ଗ୍ରହଣ କରିଛି ଯାହା ଆଶାତୀତ ସଫଳତା ଆଣି ପାରିଛି ଏବଂ ମୋ ସରକାରଙ୍କୁ ଆଗାମୀ ସମୟରେ ଏହି ଧାରା ବଜାୟ ରଖିବା ପାଇଁ ଆଗ୍ରହୀ କରାଇଛି । ମୋ ସରକାର ଏ ମଧ୍ୟବର୍ତ୍ତିତା ସମୂହ ମଧ୍ୟରୁ କେତୋଟିର ପରିସର ବୃଦ୍ଧି କରାଇବ ଏବଂ ଆମେ ଜନଜାତିମାନଙ୍କର ପବିତ୍ର ପୀଠ ଏବଂ ପୂଜାସ୍ଥଳୀର ରକ୍ଷଣା ବେକ୍ଷଣ ତଥା ଉନ୍ନତିକରଣ, ଓଡ଼ିଶା ଜନଜାତି ସଶକ୍ତିକରଣ ଏବଂ ଜୀବିକା ମିଶନ୍ (ଓ.ଟି.ଇ.ଏଲ୍.ପି.)ର କାର୍ଯ୍ୟ ପରିସର ବୃଦ୍ଧି, ବହୁଭାଷୀ ଶିକ୍ଷାଦାନ ବ୍ୟବସ୍ଥାରେ ଅଧିକ ଜନଜାତି ଭାଷା ଅନ୍ତର୍ଭୁକ୍ତ କରିବା, ସମସ୍ତ ଜନଜାତି ପରିବାରଗୁଡ଼ିକୁ ସ୍ୱାସ୍ଥ୍ୟ ବୀମା, ଗୃହ ନିର୍ମାଣ, ପେନ୍‌ସନ୍ ସୁବିଧା ପ୍ରଭୃତି ମଧ୍ୟବର୍ତ୍ତିତା ଉପରେ ଯଥେଷ୍ଟ ଗୁରୁତ୍ୱାରୋପ କରିବା । ଜନଜାତି ବର୍ଗର ପିଲାମାନଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ ପାଇଁ ମୋ ସରକାର ସହରାଞ୍ଚଳରେ ଜନଜାତି ଶିକ୍ଷା ସଂକୁଳ ସ୍ଥାପନ କରିବ ।

**୧୮.** ସଂଖ୍ୟାଲଘୁ ସମ୍ପ୍ରଦାୟ ନିମନ୍ତେ କାର୍ଯ୍ୟକାରୀ କରାଯାଉଥିବା କଲ୍ୟାଣକାରୀ କାର୍ଯ୍ୟକ୍ରମଗୁଡ଼ିକୁ ଆଗେଇ ନେବା ସହିତ ମୋ ସରକାର ସେମାନଙ୍କର ସର୍ବାଙ୍ଗୀନ ବିକାଶ ନିମନ୍ତେ ସମସ୍ତ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବ ଏବଂ ସେମାନଙ୍କର ସ୍ୱାତନ୍ତ୍ର୍ୟ ବଜାୟ ରଖି ବିକାଶ ପ୍ରକ୍ରିୟାରେ ସେମାନଙ୍କର ସକ୍ରିୟ ଅଂଶ ଗ୍ରହଣକୁ ନିଶ୍ଚିତ କରାଇବ । ତେଲୁଗୁ, ବେଙ୍ଗଲୀ ଏବଂ ଉର୍ଦ୍ଦୁ ଭାଷାରେ ଅଧିକ ସଂଖ୍ୟକ ଶିକ୍ଷକ ନିଯୁକ୍ତ କରାଯିବା ସହିତ ଏହି ସବୁ ଭାଷାରେ ଅଧିକ ସଂଖ୍ୟକ ଶିକ୍ଷକ ସୃଷ୍ଟି କରିବା ପାଇଁ ସ୍ୱତନ୍ତ୍ର ଟ୍ରେନିଂ ସ୍କୁଲ ଖୋଲାଯିବ । ସଂଖ୍ୟାଲଘୁ ସମ୍ପ୍ରଦାୟ ନିମନ୍ତେ ସମୂହିକ ସୁବିଧା ବ୍ୟବସ୍ଥା ବୃଦ୍ଧି କରାଯିବା ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯିବ । ସଂଖ୍ୟାଲଘୁ ଶିକ୍ଷାନୁଷ୍ଠାନଗୁଡ଼ିକୁ ଭିତ୍ତିଭୂମି ସୁବିଧା ତଥା ଆର୍ଥିକ ସହାୟତା ପ୍ରଦାନ କରାଯିବା ନିମନ୍ତେ ଉଦ୍ୟମ କରାଯିବ । ଗରିବ ସଂଖ୍ୟାଲଘୁ ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ଛାତ୍ରବୃତ୍ତି ଏବଂ ଜାତୀୟସ୍ତରର ଶିକ୍ଷା ସଂସ୍ଥାନରେ ଅଧ୍ୟୟନ ନିମନ୍ତେ ଯୋଗ୍ୟ ବିବେଚିତ ମେଧାବୀ ସଂଖ୍ୟାଲଘୁ ଛାତ୍ରଛାତ୍ରୀଙ୍କୁ ନିଜର ଉଚ୍ଚଶିକ୍ଷା ଜାରି ରଖିବା ନିମନ୍ତେ ଆର୍ଥିକ ସହାୟତା ପ୍ରଦାନ ଆମ ପ୍ରସ୍ତାବିତ ମଧ୍ୟବର୍ତ୍ତିତା ସମୂହର ଏକ ଅବିଚ୍ଛେଦ୍ୟ ଅଙ୍ଗ ହେବ । ସମସ୍ତ ସଂଖ୍ୟାଲଘୁ କଲ୍ୟାଣକାରୀ କାର୍ଯ୍ୟକ୍ରମ ତଥା ଅନୁଷ୍ଠାନ ସମୂହକୁ ଗୋଟିଏ ବିଭାଗ ଅଧୀନରେ ରଖାଯାଇ ଗୋଟିଏ ସ୍ଥାନରୁ ସବୁ କାର୍ଯ୍ୟକ୍ରମର ପରିଚାଳନା କରାଯିବ । ଭୁବନେଶ୍ୱରରେ ଶୀଘ୍ର ଏକ ହଜ୍ ଗୃହ ନିର୍ମାଣ କରାଯିବ ।

**୧୯.** ମୋ ସରକାର ସର୍ବଦା ସମାଜର ଦୁର୍ବଳତମ ବର୍ଗ ତଥା ବିଶେଷ ଭାବରେ ବସ୍ତି ବାସିନ୍ଦାଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ଉଦ୍ୟମ କରି ଆସିଛି । ଏମାନଙ୍କ ସ୍ୱାର୍ଥ ରକ୍ଷା ନିମନ୍ତେ ମୋ ସରକାର ଏକ 'ବସ୍ତି ଥଇଥାନ ବୋର୍ଡ' ଏବଂ ଏକ ବିଶଦ 'ସହରାଞ୍ଚଳ ବସ୍ତି ବାସିନ୍ଦା ଥଇଥାନ ନୀତି' ପ୍ରଣୟନ ଭଳି ଉପକ୍ରମମାନ ହାତକୁ ନେଇ ବସ୍ତିବାସିନ୍ଦାଙ୍କୁ କିଭଳି ସମସ୍ତ ମୌଳିକ ସୁବିଧା ସୁଯୋଗ ଯୋଗାଇ ଦିଆଯାଇପାରିବ, ତାହା ନିଶ୍ଚିତ କରାଇବ । ରାଜ୍ୟର ସବୁ ବସ୍ତି ବାସିନ୍ଦାଙ୍କୁ ବିଭିନ୍ନ ସାମାଜିକ କଲ୍ୟାଣ ଯୋଜନା ଯଥା: ପେନ୍‌ସନ୍, ଶିକ୍ଷା ତଥା ବିବାହ ପାଇଁ ସହାୟତା, ସ୍ୱାସ୍ଥ୍ୟ ବୀମା ସୁବିଧା ଏବଂ ୧ ଟଙ୍କାରେ ୧ କିଲୋ ଚାଉଳ ଯୋଗାଣ ପ୍ରଭୃତି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯିବ । ଆତ୍ମ ନିଯୁକ୍ତି ଏବଂ କ୍ଷୁଦ୍ର ବ୍ୟବସାୟ ପାଇଁ ରିହାତି ଯୁକ୍ତ ଋଣ ଆଗ୍ରହୀ ବସ୍ତିବାସିନ୍ଦାଙ୍କୁ ଯୋଗାଇ ଦିଆଯିବ । ସ୍ୱତନ୍ତ୍ର କଲୋନୀ ମାନ ସ୍ଥାପନ କରାଯିବା ସହିତ ବସ୍ତି ବାସିନ୍ଦାଙ୍କ ପାଇଁ ଆବାସିକ ସୁବିଧା ସୃଷ୍ଟି କରାଯିବ ।

**୨୦.** ମୋ ସରକାର ବିଭିନ୍ନ ଅଣଆନୁଷ୍ଠାନିକ କ୍ଷେତ୍ରରେ ନିୟୋଜିତ ସମସ୍ତ ଅସଂଗଠିତ ଶ୍ରମିକମାନଙ୍କ ନିମନ୍ତେ ଏକ 'ଶ୍ରମିକ କଲ୍ୟାଣ ବୋର୍ଡ' ଗଠନ କରି ଏମାନଙ୍କୁ ବୋର୍ଡରେ ପଞ୍ଜିକୃତ ହେବାର ୧ ବର୍ଷ ପରେ ନିର୍ମାଣ ଶ୍ରମିକଙ୍କୁ ମିଳୁଥିବା ସମସ୍ତ ପ୍ରକାରର ସହାୟତା ଯୋଗାଇ ଦେବ। ଏଥି ସହିତ ଆସନ୍ତା ୫ବର୍ଷ ମଧ୍ୟରେ ଅସଂଗଠିତ କ୍ଷେତ୍ରରେ କାର୍ଯ୍ୟରତ ସମସ୍ତ କ୍ଷୁଦ୍ର ବ୍ୟବସାୟୀ ଏବଂ ବୁଲା ବିକାଳୀଙ୍କର ପର୍ଯ୍ୟାୟକ୍ରମେ ପଞ୍ଜିକରଣ କରାଯାଇ ସେମାନଙ୍କୁ ସ୍ୱାସ୍ଥ୍ୟ ବୀମା ସୁବିଧା ଏବଂ ରିହାତି ଯୁକ୍ତ ଋଣ ସୁବିଧା ପ୍ରଦାନ କରାଯିବ ।

**୨୧.** ମୋ ସରକାର ରାଜ୍ୟରେ ଶିଳ୍ପ ଭିତ୍ତିଭୂମି ସଂପ୍ରସାରଣରେ ହାସଲ କରିଥିବା ଅଗ୍ରଗତି ବଜାୟ ରଖିବା ନିମନ୍ତେ ବଦ୍ଧପରିକର । ଏବେ ମୋ ସରକାର ଏହି ଦ୍ରୁତ ଶିଳ୍ପାୟନର ଲାଭ ଉଠାଇବାକୁ ଗୁରୁତ୍ୱ ଦେଇ ସ୍ଥାନୀୟ ମୂଲ୍ୟଯୁକ୍ତ ଉତ୍ପାଦନକୁ ପ୍ରୋତ୍ସାହିତ କରାଇବ ଯାହା ଫଳରେ ରାଜ୍ୟର ଯୁବକଯୁବତୀଙ୍କ ପାଇଁ ପ୍ରଭୁତ ନିଯୁକ୍ତି ସୁଯୋଗ ସୃଷ୍ଟି ହେବା ସହିତ ରାଜ୍ୟର ରାଜସ୍ୱ ସମ୍ବଳ ସଂଗ୍ରହ ବୃଦ୍ଧି ପାଇପାରିବ । ମୋ ସରକାର ରୁଗ୍ଣ ତଥା ବନ୍ଦ ହୋଇଯାଇଥିବା ଶିଳ୍ପ ସଂସ୍ଥା ଗୁଡିକୁ ପୁନରୁଦ୍ଧାର ତଥା କାର୍ଯ୍ୟକ୍ଷମ କରାଇବା ନିମନ୍ତେ ପ୍ରୟାସ କରିବା ସହିତ ଗ୍ରାମ ପଂଚାୟତ ଏବଂ ଶିଳ୍ପ ସଂସ୍ଥା ସ୍ଥାପନ ଯୋଗୁଁ ଜମି ହରାଉଥିବା ଲୋକ ଯେଭଳି ସଂପୃକ୍ତ ସଂସ୍ଥାରେ ଅଂଶୀଦାର ଭାବରେ ସ୍ୱୀକୃତ ହେବେ ଏବଂ ନିୟମିତ ଭାବରେ ଅଂଶଧନ ପାଇ ନିଜ ଆୟ ବୃଦ୍ଧି କରାଇ ପାରିବେ ତାହା ବାଧ୍ୟତାମୂଳକ କରାଇବ ।

**୨୨.** ଅନ୍ୟ ରାଜ୍ୟମାନଙ୍କଠାରୁ ତୁଳନାତ୍ମକ ଭାବରେ ସୁବିଧାଜନକ ସ୍ଥିତିରେ ରହିଥିବା ଓଡ଼ିଶା ଭଳି ଏକ ରାଜ୍ୟ କେନ୍ଦ୍ରୀୟ ଅବହେଳା ଯୋଗୁଁ ଐତିହାସିକ ଦୃଷ୍ଟିରୁ ଏକ ପଛୁଆ ରାଜ୍ୟ ଭାବରେ ରହିଛି । ସାମ୍ବିଧାନିକ ବ୍ୟବସ୍ଥାନୁଯାୟୀ ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟ

ପାହ୍ୟା ମାନ୍ୟତା ପ୍ରଦାନ କରାଗଲେ ରାଜ୍ୟର ସର୍ବାଙ୍ଗୀନ ବିକାଶ ସାଧିତ ହୋଇପାରନ୍ତା । ଆଗାମୀ ଦିନରେ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ସହିତ ଓଡ଼ିଶାର ସ୍ୱାଭିମାନ ପ୍ରସଙ୍ଗ ଉପରେ ଗୁରୁତ୍ୱାରୋପ କରାଯାଇ ଆମ ନ୍ୟାଯ୍ୟ ଦାବି ହାସଲ କରାଯିବା ପର୍ଯ୍ୟନ୍ତ ଏ ଲଢ଼େଇ ଆହୁରି ଜୋରଦାର ହେବ। ଏହାଛଡା ମାତୃଭାଷା ଓଡ଼ିଆ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ନିମନ୍ତେ ପଦକ୍ଷେପ ଗ୍ରହଣ କରିବା ସହିତ ଓଡ଼ିଆ ଭାଷାର ସର୍ବାଙ୍ଗୀନ ବିକାଶ ଲକ୍ଷ୍ୟରେ ଏକ ଓଡ଼ିଆ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ ।

**୨୩.** ପଶ୍ଚିମ ଓଡ଼ିଶା ତଥା କେ.ବି.କେ ଅଂଚଳର ବିକାଶକୁ ମୋ ସରକାର ଅଗ୍ରାଧିକାର ଦେବ । ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ କୋଶଲୀ/ ସମ୍ବଲପୁରୀ ଭାଷାକୁ ଅନ୍ତର୍ଭୁକ୍ତ କରାଯିବା ପାଇଁ ଉଦ୍ୟମ ଜାରି ରଖିବା ସହିତ ମୋ ସରକାର ପାରମ୍ପରିକ ମରୁଡ଼ି ପ୍ରବଣ ଅଂଚଳ ଭାବେ ପରିଚିତ ପଶ୍ଚିମ ଓଡ଼ିଶା ଓ କେ.ବି.କେ ଅଂଚଳ ପାଇଁ ସ୍ୱତନ୍ତ୍ର ମରୁଡ଼ି ନିରାକରଣ କାର୍ଯ୍ୟକ୍ରମ ପରିଚାଳନା କରିବା ସହିତ ଜଳସେଚନ ସୁବିଧା ଯୋଗାଇ ଦେବା ପାଇଁ ଯୋଜନା କରିବ । ମୋ ସରକାର ଏହି ଅଂଚଳର ସମସ୍ତ ପ୍ରମୁଖ ୨ଲେନ୍ ବିଶିଷ୍ଟ ରାସ୍ତାକୁ ୪ ଲେନ୍ ବିଶିଷ୍ଟ ରାସ୍ତାରେ ପରିଣତ କରାଇବା ସହିତ ଉତ୍ତର ଓଡ଼ିଶା ଏବଂ ଦକ୍ଷିଣ ଓଡ଼ିଶାକୁ ପଶ୍ଚିମାଞ୍ଚଳର ପଛୁଆ ଅଂଚଳ ତଥା କେ.ବି.କେ ଜିଲ୍ଲା ଗୁଡିକ ମଧ୍ୟ ଦେଇ ଗତି କରୁଥିବା ଏକ ନୂତନ ଏକ୍ସପ୍ରେସ୍ ହାଇୱେ ନିର୍ମାଣ କରିବ । ରେଳ ଯୋଗାଯୋଗ ଦ୍ୱାରା ସଂଯୁକ୍ତ ହୋଇ ନଥିବା ରାଜ୍ୟର ସବୁ ଜିଲ୍ଲାକୁ ରେଳପଥ ନିର୍ମାଣ ପାଇଁ ଖୋର୍ଦ୍ଧା–ବଲାଙ୍ଗୀର ରେଳପଥ ଢ଼ାଞ୍ଚାରେ ମୋ ସରକାର କେନ୍ଦ୍ର ସହିତ ବ୍ୟୟଭାର ବହନରେ ସହଯୋଗିତା କରିବ ।

**୨୪.** ଅନ୍ୟ କୌଣସି ସଡ଼କ ନିର୍ମାଣ ଯୋଜନାରେ ଅନ୍ତର୍ଭୁକ୍ତ ହୋଇପାରୁ ନଥିବା ଗ୍ରାମଗୁଡିକୁ ଯୋଗାଯୋଗ ବ୍ୟବସ୍ଥା ନିଶ୍ଚିତ କରିବା ପାଇଁ ଏକ 'ମୁଖ୍ୟମନ୍ତ୍ରୀ ସଡ଼କ ଯୋଜନା' ଆରମ୍ଭ କରାଯିବା ସହିତ 'ବିଜୁ ସେତୁ ଯୋଜନା'ର ପରିସର ବୃଦ୍ଧି କରାଯିବ । ମୋ ସରକାର ଗ୍ରାମାଞ୍ଚଳରେ ବିଦ୍ୟୁତ୍ ଶକ୍ତି ତଥା ପାଇପ୍ ଯୋଗେ ପାନୀୟ ଜଳ ଯୋଗାଣ ନିଶ୍ଚିତ କରିବ ।

**୨୫.** ଗ୍ରାମ ଏବଂ ଗ୍ରାମପଂଚାୟତଗୁଡିକର ଅଗ୍ରାଧିକାର ଭିତ୍ତିରେ ସର୍ବାଙ୍ଗୀନ ଉନ୍ନତି ମାଧ୍ୟମରେ ମୋ ସରକାର ରାଜ୍ୟରେ ପରିବର୍ତ୍ତନ ଆଣିବା ନିମନ୍ତେ ଉଦ୍ୟମରତ । ଆମର ଏହି ପ୍ରତିବଦ୍ଧତାକୁ ଦୋହରାଇବାକୁ ଯାଇ ମୋ ସରକାର ପ୍ରତ୍ୟେକ ପଂଚାୟତରେ ସର୍ବୋତ୍କୃଷ୍ଟ ମାନର ଆଧୁନିକ ଭିଡ଼ିଓ ହଲ୍ ଏବଂ କ୍ଷୁଦ୍ର ପ୍ରେକ୍ଷାଳୟ ସୁବିଧା ଥିବା ଏକ କମ୍ୟୁନିଟି ହଲ୍ ତଥା କଲ୍ୟାଣ ମଣ୍ଡପ ନିର୍ମାଣ, ହାଇ ମାଷ୍ଟ ଲାଇଟ୍ ବ୍ୟବସ୍ଥା, ଏକ ଆଦର୍ଶ ପାଠାଗାର ସ୍ଥାପନ, ଷ୍ଟ୍ରିଟ୍ ଲାଇଟ୍ ବ୍ୟବସ୍ଥା ଏବଂ ପଂଚାୟତ ସ୍ତରରେ ଆଇନ୍ ସହାୟତା ପ୍ରକୋଷ୍ଠ ଖୋଲିବା ଭଳି ଅନେକ ଗୁଡିଏ ନୂତନ ପଦକ୍ଷେପ ଗ୍ରହଣ କରିବ । 'ବିଜୁ ଗାଁ ଗାଡି' ଯୋଜନା ସହାୟତାରେ ବସ୍ ସେବା ରହିତ ପଂଚାୟତଗୁଡିକୁ ପରିବହନ ସୁବିଧା ଯୋଗାଇ ଦିଆଯିବ । କୃଷି ଭିତ୍ତିଭୂମିର ବିକାଶ ପାଇଁ ଧାନ ସଂଗ୍ରହଣ ଅଂଚଳରେ ନିୟନ୍ତ୍ରିତ ବଜାର କମିଟିକୁ ମିଳୁଥିବା ୨ପ୍ରତିଶତ ଆୟରୁ ଏକ ନିର୍ଦ୍ଦିଷ୍ଟ ଅଂଶ ଗ୍ରାମ ପଂଚାୟତକୁ ମିଳିବ ।

**୨୬.** ପ୍ରତିବର୍ଷ କାର୍ଯ୍ୟଶକ୍ତି ଭାବରେ ଉଭା ହେଉଥିବା ବହୁସଂଖ୍ୟକ ଯୁବକଯୁବତୀମାନଙ୍କୁ କାର୍ଯ୍ୟଦକ୍ଷ ହେବା ନିମନ୍ତେ ପ୍ରସ୍ତୁତ କରିବା ପାଇଁ ମୋ ସରକାର 'ମୁଖ୍ୟମନ୍ତ୍ରୀଙ୍କ ନିଯୁକ୍ତି ସୃଷ୍ଟି ଯୋଜନା' ପ୍ରଚଳନ କରାଇବ ଯାହା ପ୍ରତି ଗ୍ରାମପଂଚାୟତରୁ ଅତିକମ୍‌ରେ ୧୫୦ ଯୁବକଯୁବତୀଙ୍କ ଦକ୍ଷତା ବୃଦ୍ଧି କରିବା ସହିତ ପରବର୍ତ୍ତୀ ସମୟରେ ସେମାନଙ୍କୁ ଉଦ୍ୟୋଗ ସ୍ଥାପନ ନିମନ୍ତେ ଆବଶ୍ୟକୀୟ ଋଣ ଓ ରିହାତି ଯୋଗାଇ ଦେବ । ଯୁବ ଉଦ୍ୟୋଗୀମାନଙ୍କୁ ସେମାନଙ୍କର ନୂତନ ବ୍ୟବସାୟିକ ଚିନ୍ତାଧାରାକୁ ସାକାର କରିବା ପାଇଁ ସୁଯୋଗ ଦେବା ଉଦ୍ଦେଶ୍ୟରେ 'ଓଡ଼ିଶା ଯୁବ ଉଦ୍ଭବ ପାଣ୍ଠି' ଗଠନ କରାଯିବ । ସରକାରୀ ସ୍ତରରେ ସବୁ କ୍ଷେତ୍ରରେ ନିଯୁକ୍ତି ସୁଯୋଗକୁ ବ୍ୟାପକ କରାଯିବ ଏବଂ ରାଜ୍ୟକୁ ଆସୁଥିବା ସବୁ କମ୍ପାନୀ, ଶିଳ୍ପ ପ୍ରତିଷ୍ଠାନ ଏବଂ ପୁଞ୍ଜି ନିବେଶରେ ସ୍ଥାନୀୟ ଯୋଗ୍ୟତାଧାରୀଙ୍କୁ ନିଯୁକ୍ତି ଦେବା ଉପରେ ସର୍ବାଧିକ ଗୁରୁତ୍ୱାରୋପ କରାଯିବ ।

**୨୭.** ଶାସନ ଢ଼ାଞ୍ଚାରେ ଦୃଷ୍ଟାନ୍ତମୂଳକ ପରିବର୍ତ୍ତନ ଆଣି ମୋ ସରକାର ପ୍ରଶାସନର ପ୍ରତ୍ୟେକ କ୍ଷେତ୍ରରେ ଆବଶ୍ୟକତା ଭିତ୍ତିକ ପ୍ରଶାସନିକ ବ୍ୟବସ୍ଥା ପରିବର୍ତ୍ତେ ଅଧିକାର ସମ୍ବଳିତ ପ୍ରଶାସନିକ ବ୍ୟବସ୍ଥା ତଥା ସେବା ପ୍ରଦାନ କରିବା ମୋ ସରକାର ଟେଣ୍ଡର ପ୍ରକ୍ରିୟାରେ ସ୍ୱଚ୍ଛତା ଆଣିବା ତଥା ବିଭିନ୍ନ ସରକାରୀ ବିଭାଗ ମାଧ୍ୟମରେ କରାଯାଉଥିବା କାର୍ଯ୍ୟଗୁଡିକର ମାନ ବଜାୟ ରଖିବା ନିମନ୍ତେ ଏକ ସ୍ୱାଧୀନ ସଂସ୍ଥା ଭାବରେ 'ଓଡ଼ିଶା ରାଜ୍ୟ ସ୍ୱଚ୍ଛତା ପରିଷଦ' ଗଠନ କରିବ । ସେବା ଅଧିକାର ଅଧିନିୟମର ପରିପାଳନ ଏବଂ କାର୍ଯ୍ୟକାରିତା ତଦାରଖ କରିବା ପାଇଁ ଏକ ସ୍ୱାଧୀନ 'ଲୋକ ସେବା ଅଧିକାର କର୍ତ୍ତୃପକ୍ଷ' ପଦବୀ ସୃଷ୍ଟି କରାଯିବ । ସେବା ଅଧିକାର ପରିସରକୁ ଆହୁରି ବ୍ୟାପକ କରାଯିବ । ପଛୁଆ ତଥା ଜନଜାତି ଅଧ୍ୟୁଷିତ ଅଂଚଳଗୁଡିକର ସାମଗ୍ରିକ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ତଥା ପ୍ରଶାସନିକ ବ୍ୟବସ୍ଥାର ବିକେନ୍ଦ୍ରୀକରଣ ଲକ୍ଷ୍ୟରେ ବିକାଶ ପରିଷଦମାନ ଗଠନ କରାଯିବ । ୧୦୦୦ କିମ୍ବା ତହିଁରୁ ଅଧିକ ଜନସଂଖ୍ୟା ଥିବା ସମସ୍ତ

ଗ୍ରାମଗୁଡ଼ିକୁ ପର୍ଯ୍ୟାୟକ୍ରମେ ଗ୍ରାମପଂଚାୟତରେ ପରିଣତ କରାଯିବ । ତୃଣମୂଳ ସ୍ତରରେ କରାଯାଉଥିବା ଯୋଜନାଗୁଡ଼ିକୁ ପ୍ରୋତ୍ସାହିତ କରିବା ପାଇଁ ଗ୍ରାମ ପଂଚାୟତ, ପଂଚାୟତ ସମିତି ଏବଂ ଜିଲ୍ଲା ପରିଷଦଗୁଡ଼ିକୁ ଅନାବନ୍ଧ ପାଣ୍ଠି ଯୋଗାଇ ଦିଆଯିବ ।

**୨୮.** ରାଜ୍ୟରେ ସାମାଜିକ ସୁରକ୍ଷା ଯୋଜନା ଯେଉଁଭଳି ଉପାୟରେ ଏବଂ ମାର୍ଗରେ କାର୍ଯ୍ୟକାରୀ କରାଯାଉଛି ମୋ ସରକାର ତାହା ପରିବର୍ତ୍ତନ କରିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରିସାରିଛନ୍ତି । ମୋ ସରକାରଙ୍କ ପାଇଁ ଏଣିକି ସାମାଜିକ ସୁରକ୍ଷା ମିଳିବା ଏକ ଅଧିକାର ଭାବରେ ପରିଗଣିତ ହେବ ଯାହା ଫଳରେ ଏହା ପ୍ରକୃତ ପକ୍ଷରେ ସାର୍ବଜନୀନ ହୋଇପାରିବ । ଭତ୍ତା ପାଇବା ଯୋଗ୍ୟ ସମସ୍ତ ହିତାଧିକାରୀଙ୍କୁ ଭତ୍ତା ପ୍ରଦାନ କରାଯିବ । ତିରିଶ ବର୍ଷ ବୟସରୁ ଊର୍ଦ୍ଧ୍ୱ ଅବିବାହିତା ଏବଂ ନିରାଶ୍ରୟା ମହିଳାମାନଙ୍କୁ ପେନ୍‌ସନ୍ ପରିସରଭୁକ୍ତ କରାଯିବ । ଅନାଥ ଓ ଅସହାୟ ଶିଶୁଙ୍କ ଯଥାଯଥ ଥଇଥାନ ନିମନ୍ତେ 'ବିଜୁ ବାଳ ବିକାଶ ଯୋଜନା' ଆରମ୍ଭ କରାଯିବ । ବୌଦ୍ଧିକ ବିକାରଗ୍ରସ୍ତ ପିଲାମାନଙ୍କ ପାଇଁ ରାଜ୍ୟ ସରକାରଙ୍କ ତରଫରୁ ପ୍ରିମିୟମ୍ ଦିଆଯାଇ ନୂଆ ସ୍ୱାସ୍ଥ୍ୟ ବୀମା ଯୋଜନା 'ନିରାମୟ' ଆରମ୍ଭ କରାଯିବ । ଆମେ ଭିନ୍ନକ୍ଷମ, ବୃଦ୍ଧ ବୃଦ୍ଧା, ନିରାଶ୍ରୟ ଏବଂ ଆଶ୍ରିତ ଶିଶୁମାନଙ୍କୁ ମିଳୁଥିବା ସହାୟତାକୁ ବ୍ୟାପକ ତଥା ପରିବର୍ଦ୍ଧିତ କରିବା ଏବଂ ସବୁ ଧର୍ମର ବରିଷ୍ଠ ନାଗରିକମାନଙ୍କୁ ତୀର୍ଥଯାତ୍ରାରେ ଯିବାପାଇଁ ସହାୟତା ଯୋଗାଇ ଦେବା ।

**୨୯.** ପରିଶେଷରେ ମୋ ସରକାର ମତ୍ସ୍ୟଜୀବୀମାନଙ୍କର ଉତ୍‌ଥାନ ତଥା ଜଙ୍ଗଲ ଉପରେ ଜୀବନ ଧାରଣ ପାଇଁ ନିର୍ଭର କରୁଥିବା ଲୋକମାନଙ୍କ ପାଇଁ ନିରନ୍ତର କାର୍ଯ୍ୟ କରିଚାଲିବ । ପ୍ରତିକୂଳ ପାଣିପାଗ ହେତୁ ମତ୍ସ୍ୟଜୀବୀଙ୍କୁ ଜୀବିକା ନିମନ୍ତେ ସମୁଦ୍ରକୁ ଯିବାକୁ ବାରଣ କରାଯାଉଥିବା ସମୟରେ ଦିଆଯାଉଥିବା ଜୀବିକା ସହାୟତା ବୃଦ୍ଧି କରାଯିବ । ଏକ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ମତ୍ସ୍ୟଜୀବୀମାନଙ୍କର ସବୁ କଚ୍ଚା ଘରକୁ ପକ୍କା ଘରରେ ପରିଣତ କରାଯିବ । 'ଆମ ଜଙ୍ଗଲ ଯୋଜନା' ଉପକ୍ରମର ପରିବର୍ଦ୍ଧନ କରାଯାଇ ସମସ୍ତ ବନ ସୁରକ୍ଷା ସମିତିଗୁଡ଼ିକୁ ଏଥିରେ ସାମିଲ କରାଯିବ ଯାହା ପୁନଃ ଜଙ୍ଗଲ ସୃଷ୍ଟି ଓ ଜଙ୍ଗଲ ସୁରକ୍ଷାରେ ସହାୟକ ହେବା ସହିତ ଜଙ୍ଗଲ ଉପରେ ନିର୍ଭରଶୀଳ ପରିବାରଗୁଡ଼ିକୁ ଏହାଦ୍ୱାରା ଜୀବିକା ସୁରକ୍ଷା ଯୋଗାଇ ଦିଆଯାଇପାରିବ ।

ଓଡ଼ିଶା ଏବେ ନିଜକୁ ସଠିକ୍ ଭାବରେ ଉପସ୍ଥାପିତ କରିବା ପାଇଁ ସମର୍ଥ ହୋଇଛି ଏବଂ ଧୀରେ ଧୀରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ହାସଲ କରୁଛି । ଆମ ଦେଶର ଅଭିବୃଦ୍ଧିର ଦିଗ ଏବଂ ସ୍ତର ନିର୍ଦ୍ଧାରଣ କରିବାରେ ଆମ ରାଜ୍ୟ ଏବେ ନିର୍ଣ୍ଣାୟକ । ବିଭିନ୍ନ ଦିଗରୁ ଐତିହାସିକ ଅବହେଳା ସତ୍ତ୍ୱେ ଆମେ ଆମ ଦାୟିତ୍ୱବୋଧରୁ ଓହରି ଯାଇନୁ ଏବଂ ଅର୍ଥପୂର୍ଣ୍ଣ ଭାବେ ବିକାଶ ପ୍ରକ୍ରିୟାରେ ଯୋଗଦାନ ଦେଇଛୁ । ବର୍ତ୍ତମାନ ଏଭଳି ଏକ ବାତାବରଣ ସୃଷ୍ଟି କରିବାର ସମୟ ଆସି ପହଂଚିଛି ଯେଉଁଥିରୁ ଆମ ଜନସାଧାରଣ, ଆମ ସମାଜ ପ୍ରଗତି ପ୍ରକ୍ରିୟାରେ ଜଣେ ଜଣେ ସମଭାଗୀ ହିସାବରେ ମିଳିଥିବା ଲାଭରେ ଅଂଶୀଦାର ହେବା ଉଚିତ୍ । ଚଉଦ ବର୍ଷ ତଳେ ଆମେ ଆମ ରାଜ୍ୟ, ଆମ ଲୋକଙ୍କୁ ପରିବର୍ତ୍ତନ କରାଇବାର ଯୁଗାନ୍ତକାରୀ ଯାତ୍ରା ଆରମ୍ଭ କରିଥିଲେ । ଆମେ ଆମର ଏହି ଯାତ୍ରାରେ ଆମ ଜନସାଧାରଣଙ୍କଠାରୁ ପୂର୍ଣ୍ଣ ସମର୍ଥନ ଓ ସହଯୋଗ ପାଇଛେ ଯେଉଁଥିପାଇଁ ଆମେ ସବୁବେଳେ ସେମାନଙ୍କ ନିକଟରେ କୃତଜ୍ଞ ରହିବା । କିଛି କ୍ଷେତ୍ରରେ ଆମକୁ ସଫଳତା ମିଳିଛି ଏବଂ କିଛି କ୍ଷେତ୍ରରେ ଆମ୍ଭେ ସଫଳତା ଏବଂ ବିଫଳତା ଉଭୟର ସାମ୍ନା କରିଛେ । କିନ୍ତୁ ଆମେ ଧୈର୍ଯ୍ୟହରା ହୋଇନାହୁଁ, ବରଂ ଏହିଭଳି ବିଫଳତା ଆମକୁ ଅଧିକ ଶକ୍ତିଶାଳୀ ଏବଂ ଦୃଢ଼ କରିଛି ଏବଂ ଆମ ରାଜ୍ୟକୁ ସବୁମତେ ସର୍ବତୋଗ୍ରାହୀ କରାଇବାର ଅନ୍ତିମ ଲକ୍ଷ୍ୟରୁ କଦାପି ବିଚ୍ୟୁତ ନ ହେବାକୁ ଆମକୁ ପ୍ରେରଣା ଦେଇଛି । ଓଡ଼ିଶା ଏଭଳି ଏକ ରାଜ୍ୟରେ ପରିଣତ ହେବ ଯେଉଁଠି ପ୍ରତ୍ୟେକ ବ୍ୟକ୍ତିବିଶେଷ ନିଜର ସ୍ୱପ୍ନ ସାକାର କରିବ, ନିଜର ଅଭିଳାଷ ପୂରଣ କରି ପାରିବ ଏଂବ ସାଥୀ ନାଗରିକଙ୍କର ପ୍ରଗତିରେ ଯୋଗଦାନ କରିପାରିବ । ଆମକୁ ଅଭୂତପୂର୍ଣ୍ଣ ସମର୍ଥନ ଦେଇଥିବା ଓଡ଼ିଶାବାସୀଙ୍କ ସମ୍ମାନାର୍ଥେ ଆମେ ଆଜି ଆମ ମଥା ନତ କରୁଛୁ ଏବଂ ଆମେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏ ଆଶ୍ୱାସନା ଦେଉଛୁ ଯେ ସେମାନେ ଏକ ସ୍ୱଚ୍ଛ, ପାରଦର୍ଶୀ ସରକାର ପାଇଁ ଆମ ଉପରେ ଯେଉଁ ଆସ୍ଥା ସ୍ଥାପନା କରିଥିଲେ ତାକୁ ଆମେ କେବେହେଲେ ବ୍ୟର୍ଥ ହେବାକୁ ଦେବୁ ନାହିଁ । ଓଡ଼ିଶାକୁ ଏକ ପ୍ରଗତିଶୀଳ, ସମୃଦ୍ଧ ତଥା ଶାନ୍ତିପ୍ରିୟ ରାଜ୍ୟରେ ପରିଣତ କରିବା ପାଇଁ ଆମ ଉଦ୍ୟମକୁ ସମର୍ଥନ କରିବାକୁ ମୁଁ ସମସ୍ତଙ୍କୁ ନିବେଦନ କରୁଛି ।

ମୁଁ ବର୍ତ୍ତମାନ ଆଲୋଚନା ଜାରି ରଖିବା ପାଇଁ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଏହି ଅଧିବେଶନର ସଫଳତା କାମନା କରୁଛି ।

**ଜୟହିନ୍ଦ୍**

# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ସର୍ବୋଦୟ ଆନ୍ଦୋଳନ

ଡକ୍ଟର ଅତୁଳ ଚନ୍ଦ୍ର ପ୍ରଧାନ

ସ୍ୱାଧୀନତା ପରବର୍ତ୍ତୀ ଭାରତରେ କିମ୍ବା ଓଡ଼ିଶାରେ ସର୍ବୋଦୟ ଆନ୍ଦୋଳନର ଆରମ୍ଭ ସ୍ୱାଧୀନତା ପୂର୍ବରୁ ସଂଘଟିତ ହୋଇଥିଲା । ସ୍ୱାଧୀନତା ପୂର୍ବରୁ ମହାତ୍ମା ଗାନ୍ଧୀ ଔପନିବେଶିକ ଶାସନରୁ ଦେଶକୁ ମୁକ୍ତ କରିବା ପାଇଁ ଲଢେଇ କରିବା ସଙ୍ଗେ ସଙ୍ଗେ ଏକ ରଚନାତ୍ମକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାକୁ କଂଗ୍ରେସ କର୍ମୀ ତଥା ଦେଶବାସୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ସ୍ୱାଧୀନତା ଯେତେବେଳେ ଆସନ୍ନ ହେଲା ମହାତ୍ମା ଗାନ୍ଧୀ ଚାହିଁଲେ ଯେ କଂଗ୍ରେସ ଲୋକେ କ୍ଷମତା ପଛରେ ନ ଧାଇଁ ସମାଜ ଗଠନ କାର୍ଯ୍ୟରେ ଲାଗିଯାଆନ୍ତୁ । କିନ୍ତୁ ସମସ୍ତେ ତାଙ୍କର ନିର୍ଦ୍ଦେଶ ମାନି ନଥିଲେ । ଯେଉଁମାନେ ସ୍ୱାଧୀନତା ପୂର୍ବରୁ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିଯୁକ୍ତ କରିଥିଲେ ସେମାନଙ୍କ ମଧ୍ୟରୁ କିଛି ଲୋକେ କ୍ଷମତା ରାଜନୀତିରେ ନପଶି ସେହି କାର୍ଯ୍ୟ ଚଳାଇଥିଲେ ।

୧୯୩୪ ମସିହା ଜୁନ୍ ମାସରେ ହରିଜନ ପଦଯାତ୍ରା ଶେଷରେ ଭଦ୍ରକରେ ଗାନ୍ଧୀ କର୍ମୀମାନଙ୍କୁ ଗାଁକୁ ଫେରିଯାଇ ରଚନାତ୍ମକ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସେହି ନିର୍ଦ୍ଦେଶ ଅନୁସାରେ ଗୋପବନ୍ଧୁ ଚୌଧୁରୀ ଏବଂ ତାଙ୍କର ପତ୍ନୀ ରମାଦେବୀ କେତେଜଣ କର୍ମୀଙ୍କୁ ନେଇ ସାମ୍ପ୍ରତିକ ଯାଜପୁର ଜିଲ୍ଲାର ଖରସୁଆଁ ଓ ବିରୂପା ନଦୀ ଦ୍ୱୟ ମଧ୍ୟରେ ଅବସ୍ଥିତ ବରୀ ଗ୍ରାମରେ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଏହି ଆଶ୍ରମର ନାମ ଥିଲା ସେବାଘର । ଏହି ଆଶ୍ରମ ତରଫରୁ ଗାଁ ସଫେଇ, ପାଇଖାନା ତିଆରି, ହରିଜନ ସେବା, ସାମ୍ପ୍ରଦାୟିକତା ଦୂରୀକରଣ, କୃଷିର ବିକାଶ, ବୃକ୍ଷରୋପଣ, ଗୋପାଳନ, ମହୁଚାଷ ଓ ବିଭିନ୍ନ ପ୍ରକାର କୁଟୀର ଶିଳ୍ପ ଶିକ୍ଷା ଭଳି ଜନକଲ୍ୟାଣକର କାର୍ଯ୍ୟମାନ କରାଯାଉଥିଲା । ଖଦୀ କାର୍ଯ୍ୟକ୍ରମ ପାଇଁ ସାଙ୍ଗଠନିକ ପଦକ୍ଷେପ ଅସହଯୋଗ ଆନ୍ଦୋଳନ ଆରମ୍ଭରୁ ଗ୍ରହଣ କରାଯାଇଥିଲା । ୧୯୪୭ରେ ମହାତ୍ମା ଗାନ୍ଧୀଙ୍କ ଅନୁମତି ଅନୁସାରେ ଉତ୍କଳ ଖଦୀ ମଣ୍ଡଳ ଗଠିତ ହୋଇଥିଲା । ଗୋପବନ୍ଧୁ ଚୌଧୁରୀ ଏହାର ସଭାପତି ହୋଇଥିଲେ ।

୧୯୨୩ରେ ଯମୁନାଲାଲ ବଜାଜଙ୍କ ସଭାପତିତ୍ୱରେ ଗାନ୍ଧୀ ସେବା ସଂଘ ଗଠିତ ହୋଇଥିଲା । ପରେ କିଶୋରଲାଲ ମଶ୍ରୁୱାଲା ଏହାର ସଭାପତି ଦାୟିତ୍ୱ ନେଇଥିଲେ । ୧୯୩୪ ମସିହା ପରଠାରୁ ଏହି ସଂଘ ତରଫରୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ରଚନାତ୍ମକ କାର୍ଯ୍ୟକ୍ରମର କେନ୍ଦ୍ରମାନ ଖୋଲା ଯାଇଥିଲା । ୧୯୪୧ରେ କୋରାପୁଟ ଜିଲ୍ଲାର ଗୁଣୁପୁର ତାଲୁକରେ ସଓରା ଆଦିବାସୀ ଅଧ୍ୟୁଷିତ କୁଜେନ୍ଦ୍ରୀ ଗ୍ରାମରେ ବିଶ୍ୱନାଥ ପଟ୍ଟନାୟକ ଏକ କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ୧୯୫୫ରେ ଏହି କେନ୍ଦ୍ରକୁ ଦେଖି ଏହା ପ୍ରକୃତ ସ୍ୱରାଜର ପ୍ରତିଫଳନ ବୋଲି ବିନୋବା ଭାବେ କହିଥିଲେ । ଏହି କେନ୍ଦ୍ର ଖୋଲିବା ପୂର୍ବରୁ ବିଶ୍ୱନାଥ ବରୀରେ ଦୁଇବର୍ଷ ରହିଥିଲେ ଏବଂ ଖଦୀ ଓ ଗ୍ରାମୋଦ୍ୟୋଗ ସମ୍ପର୍କରେ ଗୋପବନ୍ଧୁ ଚୌଧୁରୀଙ୍କଠାରୁ ତାଲିମ ନେଇଥିଲେ । ୧୯୩୮ରେ ଓଡ଼ିଶା ସରକାରଙ୍କ ତରଫରୁ ଗୋପବନ୍ଧୁ ଚୌଧୁରୀଙ୍କ ଅଧ୍ୟକ୍ଷତାରେ 'Board of Basic Education' ଗଢାଯାଇଥିଲା । ୧୯୪୧ରେ ଆଚାର୍ଯ୍ୟ ହରିହରଙ୍କ ଅଧ୍ୟକ୍ଷତାରେ ଉତ୍କଳ ମୌଳିକ ଶିକ୍ଷା ପରିଷଦ ଗଠିତ ହୋଇଥିଲା । ୧୯୩୮ ମସିହା ମାର୍ଚ୍ଚ ମାସରେ ପୁରୀ ଜିଲ୍ଲାର ବେରବୋଇଠାରେ ଗାନ୍ଧୀ ସେବା ସଂଘର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ମହାତ୍ମା ଗାନ୍ଧୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ମୌଲାନା ଆଜାଦ, ରାଜେନ୍ଦ୍ର ପ୍ରସାଦ, ଶଙ୍କର ରାଓ ଦେଓ, କିଶୋରଲାଲ ମଶ୍ରୁୱାଲା, କାକା କାଲେକାର ଏବଂ ଜୟପ୍ରକାଶ ନାରାୟଣ ଆଦି ତୁଙ୍ଗ ନେତାମାନେ ଯୋଗ ଦେଇଥିଲେ । ୧୯୪୨ରେ ଭାରତଛାଡ ଆନ୍ଦୋଳନ

ସମୟରେ ପୋଲିସ ଲୋକେ ବରୀ ଆଶ୍ରମ ଖାନତଲାସ କରିଥିଲେ ଏବଂ ବହୁ ନେତା ଗିରଫ ହୋଇଥିଲେ । ଗୋପବନ୍ଧୁ ଚୌଧୁରୀଙ୍କ ପ୍ରଚେଷ୍ଟାରେ ଗାନ୍ଧୀ ସେବା ସଂଘ ପତ୍ରିକା (୧୯୩୮) ଏବଂ ଗ୍ରାମ ସେବକ (୧୯୪୭) ପ୍ରକାଶିତ ହୋଇଥିଲା ।

୧୯୪୫ରେ କସ୍ତୁରବା ଗାନ୍ଧୀଙ୍କ ମୃତ୍ୟୁ ପରେ ତାଙ୍କର ସ୍ମୃତି ରକ୍ଷା ପାଇଁ କସ୍ତୁରବା ନିଧି ପ୍ରତିଷ୍ଠିତ ହୋଇଥିଲା । କସ୍ତୁରବା ଗାନ୍ଧୀ ଟ୍ରଷ୍ଟର କାର୍ଯ୍ୟ ପରିଚାଳନା କରିବା ପାଇଁ ମହାତ୍ମା ଗାନ୍ଧୀ ପ୍ରତ୍ୟେକ ପ୍ରଦେଶରୁ ଜଣେ ଜଣେ ମହିଳା ପ୍ରତିନିଧିଙ୍କୁ ବାଛିଥିଲେ । ଓଡ଼ିଶାରୁ ରମାଦେବୀ ବଛା ହୋଇଥିଲେ । କସ୍ତୁରବା ଗାନ୍ଧୀ ଟ୍ରଷ୍ଟର ଯୋଜନା ଅନୁସାରେ ରାମଚନ୍ଦ୍ରପୁରରେ ମହିଳା କର୍ମୀ ତାଲିମ ଶିବିର ଓ କନ୍ୟାଶ୍ରମ ଖୋଲା ଯାଇଥିଲା । ବରୀ, ସତ୍ୟଭାମାପୁର ଓ ଅନ୍ୟ ସ୍ଥାନମାନଙ୍କରେ କସ୍ତୁରବା ସେବା କେନ୍ଦ୍ର ସ୍ଥାପିତ ହୋଇଥିଲା ।

୧୯୪୭ ମସିହା ଶେଷ ଆଡକୁ ଗାନ୍ଧୀଙ୍କ ବିଶିଷ୍ଟ ସହଯୋଗୀ ଠକ୍କର ବାପା ଓଡ଼ିଶା ଆସିଥିଲେ । ତାଙ୍କ ପରାମର୍ଶ ଅନୁସାରେ ଆଦିବାସୀମାନଙ୍କର ବିଭିନ୍ନ ସମସ୍ୟାର ସମାଧାନ ପାଇଁ ୧୯୪୮ ମସିହା ଅକ୍ଟୋବର ମାସରେ ଉତ୍କଳ ନବଜୀବନ ମଣ୍ଡଳ ଗଠିତ ହୋଇଥିଲା । ସାରଙ୍ଗଧର ଦାସ ଓ ଗୋପବନ୍ଧୁ ଚଉଧୁରୀ ଯଥାକ୍ରମେ ଏହାର ସଭାପତି ଓ ସମ୍ପାଦକ ହୋଇଥିଲେ । କସ୍ତୁରବା ଗାନ୍ଧୀ ସ୍ମାରକ ନିଧି ଉତ୍କଳ ଶାଖାର ସହାୟତାରେ କୋରାପୁଟ ଜିଲ୍ଲାର ଅନୁନ୍ନତ ଆଦିବାସୀ ଅଧ୍ୟୁଷିତ ଡୁମ୍ରିଗୁଡା ଗ୍ରାମରେ ଏକ ଗ୍ରାମସେବା କେନ୍ଦ୍ର ସ୍ଥାପିତ ହୋଇଥିଲା ।

ଗାନ୍ଧୀ ମୃତ୍ୟୁ ପୂର୍ବରୁ ୧୯୪୮ ମସିହା ଫେବୃୟାରୀ ମାସରେ ସେବାଗ୍ରାମଠାରେ ରଚନାତ୍ମକ କର୍ମୀମାନଙ୍କର ଏକ ସମ୍ମିଳନୀ ଡାକିବା ପାଇଁ ସ୍ଥିର କରିଥିଲେ । ତାଙ୍କ ମୃତ୍ୟୁ ପରେ ୧୯୪୮ ମସିହା ମାର୍ଚ୍ଚ ମାସ ୧୩ ତାରିଖରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀକୁ ରାଜେନ୍ଦ୍ର ପ୍ରସାଦ, ଜବାହରଲାଲ ନେହେରୁ ଓ ମୌଲାନା ଆଜାଦ ବିଶେଷ ଭାବେ ଆମନ୍ତ୍ରିତ ହୋଇଥିଲେ । ସମ୍ମିଳନୀରେ ଗାନ୍ଧୀଙ୍କ ପଟ୍ଟଶିଷ୍ୟ ବିନୋବା ଭାବେଙ୍କ ପ୍ରସ୍ତାବ ଅନୁସାରେ ତାଙ୍କ ଆଦର୍ଶରେ ବିଶ୍ୱାସ କରୁଥିବା ଲୋକେ ସର୍ବୋଦୟ ସମାଜ ଗଠନ କଲେ । ସର୍ବୋଦୟ ସମାଜ ନିମ୍ନଲିଖିତ ୨୧ଟି ଉଦ୍ଦେଶ୍ୟରେ କାର୍ଯ୍ୟ କରିବ ବୋଲି ସ୍ଥିର ହେଲା ।

୧) ସାମ୍ପ୍ରଦାୟିକ ଏକତା, ୨) ଅସ୍ପୃଶ୍ୟତା ନିବାରଣ ୩) ଜାତିଭେଦ ଦୂରୀକରଣ, ୪) ନିଶା ନିବାରଣ ୫) ଖଦୀ ଓ ଅନ୍ୟାନ୍ୟ ଗ୍ରାମୋଦ୍ୟୋଗ, ୬) ମୌଳିକ ଶିକ୍ଷା, ୭) ଗ୍ରାମସଫେଇ, ୮) ସ୍ତ୍ରୀମାନଙ୍କୁ ପୁରୁଷମାନଙ୍କ ସହିତ ସମାନ ଅଧିକାର ଦେବା, ୯) ସ୍ୱାସ୍ଥ୍ୟ ଓ ପରିଚ୍ଛନ୍ନତା, ୧୦) ଦେଶର ବିଭିନ୍ନ ଭାଷାମାନଙ୍କର ବିକାଶ, ୧୧) ସଂକୀର୍ଣ୍ଣ ପ୍ରାଦେଶିକତା ଦୂରୀକରଣ (୧୨) ରାଷ୍ଟ୍ରଭାଷା ହିନ୍ଦୀର ପ୍ରସାର, ୧୩) ଆର୍ଥିକ ସମାନତା (୧୪) କୃଷିର ଉନ୍ନତି ୧୫) ମୂଲିଆ ସଂଗଠନ, ୧୬) ଆଦିବାସୀ ସେବା, ୧୭) ଛାତ୍ର ସଂଗଠନ, ୧୮) କୁଷ୍ଠରୋଗୀ ସେବା, ୧୯) ଗୋ ସେବା, ୨୦) ସଂକଟ ନିବାରଣ ଓ ଦୁଃଖୀଙ୍କ ସେବା ଏବଂ ୨୧) ପ୍ରାକୃତିକ ଚିକିତ୍ସାର ପ୍ରସାର ।

କିଶୋର ଲାଲ ମଶ୍ରୁୱାଲା ଏହି ସର୍ବୋଦୟ ସମାଜର ସଭାପତି ହେଲେ । ଓଡ଼ିଶାରୁ ପ୍ରଥମ ସର୍ବୋଦୟ ସମାବେଶରେ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ଈଶ୍ୱରଲାଲ ବ୍ୟାସ, ପୁରୁବାଈ କୃପାସିନ୍ଧୁ ହୋତା ଏବଂ ଗୋଲୋକ ଚରଣ ପାତ୍ର ଆଦି ଯୋଗ ଦେଇଥିଲେ ।

୧୯୪୯ ମସିହା ଗ୍ରୀଷ୍ମ ଋତୁରେ ଇନ୍ଦୋର ପାଖ ରାଉ ଗାଁରେ ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ଗୋପବନ୍ଧୁ ଚୌଧୁରୀ, ଗୁଣନିଧି ମହାନ୍ତି, ଆଚାର୍ଯ୍ୟ ହରିହର ଦାସ, ମନମୋହନ ଚୌଧୁରୀ ଓଡ଼ିଶାରୁ ଆହୁରି ଦଶଜଣ କର୍ମୀ ଯୋଗ ଦେଇଥିଲେ ।

ଗୋପବନ୍ଧୁ ଚୌଧୁରୀଙ୍କ ନିମନ୍ତ୍ରଣ ଅନୁସାରେ ସର୍ବୋଦୟ ସମାଜର ତୃତୀୟ ବାର୍ଷିକ ସମ୍ମିଳନୀ ଅନୁଗୋଳରେ ବାଜିରାଉତ ଛାତ୍ରାବାସ ସାମ୍ନାରେ ଆମ୍ବତୋଟାରେ ୧୯୫୦ ମସିହା ଏପ୍ରିଲ୍ ମାସରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ସର୍ବୋଦୟ ସମାଜର ଦୁଇ ହଜାରରୁ ଉର୍ଦ୍ଧ୍ୱ ସଦସ୍ୟ ଯୋଗ ଦେଇଥିଲେ । ଏଠାରେ ଓଡ଼ିଶା ଇତିହାସର ଉଲ୍ଲେଖଯୋଗ୍ୟ ଘଟଣାବଳୀ ଚିତ୍ରକଳା ମାଧ୍ୟମରେ ପ୍ରଦର୍ଶିତ ହୋଇଥିଲା ।

ଅନୁଗୋଳ ସମ୍ମିଳନୀରେ ଗୋପବନ୍ଧୁ ଚୌଧୁରୀ ଅଖିଳ ଭାରତୀୟ ସର୍ବୋଦୟ ସମାଜର ମୁଖ୍ୟ ସଂଯୋଜକ ନିର୍ବାଚିତ ହୋଇଥିଲେ । ଏହି ପଦରେ ସର୍ବୋଦୟ କାର୍ଯ୍ୟ ପରିଚାଳନା ପାଇଁ ତାଙ୍କୁ ଭାରତର ବିଭିନ୍ନ ସ୍ଥାନକୁ ଯିବାକୁ ପଡିଥିଲା ।

୧୯୫୧ ମସିହା ଏପ୍ରିଲ ମାସରେ ବିନୋବା ଭାବେ ଭୂଦାନ ଯଜ୍ଞ ଆରମ୍ଭ କଲେ । ଏହା ସର୍ବୋଦୟ ଆନ୍ଦୋଳନର ଇତିହାସରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ କଲା । ସେହିବର୍ଷ ଏପ୍ରିଲ ୭ ତାରିଖରେ ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ତେଲେଙ୍ଗାନାର

ଶିବରାମ ପଲ୍ଲୀରେ ସର୍ବୋଦୟ ସମାଜର ବାର୍ଷିକ ସମ୍ମିଳନୀ ସାତଦିନ ଧରି ଅନୁଷ୍ଠିତ ହୋଇଥିଲା । ସେତେବେଳେ କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ଭୂମିହୀନ କୃଷକମାନେ ଜମି ମାଲିକମାନଙ୍କ ସହିତ ସଂଘର୍ଷରେ ରତ ଥିଲେ । ବିନୋବା ଭାବେ ଏହି ଅବସ୍ଥାକୁ ପ୍ରତ୍ୟକ୍ଷ ଭାବରେ ଅନୁଧାନ କରିବା ପାଇଁ ପୋଚମ୍ ପଲ୍ଲୀ ଗାଁକୁ ଗଲେ । ସେଠାରେ ରାମଚନ୍ଦ୍ର ରେଡ୍ଡି ନାମଧେୟ ଜମିମାଲିକ ଭୂମିହୀନଙ୍କ ପାଇଁ ଏକ ଶହ ଏକର ଜମି ଦେବେ ବୋଲି ଘୋଷଣା କଲେ । ଏହାପରେ ବିନୋବା ଭାବେ ତେଲେଙ୍ଗାନାରେ ପଦଯାତ୍ରା କଲେ ଏବଂ ଜମିମାଲିକମାନେ ହଜାର ହଜାର ଏକର ଜମି ଭୂମିହୀନଙ୍କ ପାଇଁ ଦାନ କରିବେ ବୋଲି କହିଲେ । ଏଇଠୁ ତାଙ୍କର ଭୂଦାନ ଆନ୍ଦୋଳନ ଆରମ୍ଭ ହେଲା ।

ଏଣେ ଓଡ଼ିଶାରେ ପରୀକ୍ଷାମୂଳକ ଭାବରେ ଭୂଦାନ ବିଷୟରେ ଲୋକମାନଙ୍କ ମତିଗତି ଜାଣିବା ପାଇଁ ୧୯୫୧ ମସିହା ଡିସେମ୍ବର ମାସ ୨୪ ତାରିଖରେ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ଦୁହେଁ ପୁରୀରୁ ପଦଯାତ୍ରାରେ ବାହାରିଲେ । ସେମାନେ ପୁରୀ, ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର ଓ ସମ୍ବଲପୁର ଜିଲ୍ଲାରେ ବୁଲି କଟକ ଫେରି ଆସିଲେ । ଓଡ଼ିଶାରେ ଭୂଦାନ ଆନ୍ଦୋଳନ ଆଗେଇ ପାରିବ ବୋଲି ଉଭୟଙ୍କର ବିଶ୍ୱାସ ହେଲା । କସ୍ତୁରବା ସ୍ମାରକ ଟ୍ରଷ୍ଟର ମହିଳା କର୍ମୀମାନେ ଗାଁମାନଙ୍କରେ ବୁଲି ଭୂଦାନ ଆଦର୍ଶ ପ୍ରଚାର କଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚଉଧୁରୀ ଭୂଦାନ ଜମିର ବିଧିବଦ୍ଧ ବଣ୍ଟନ ପାଇଁ ସରକାରୀ ସ୍ୱୀକୃତି ଦେବା ଉଦ୍ଦେଶ୍ୟରେ ୧୯୫୩ ମସିହା ଏପ୍ରିଲ ମାସରେ ବିଧାନସଭାରେ ଭୂଦାନ ଯଜ୍ଞ ବିଲ୍ ଆଣିଲେ । ବିଲ୍ ଆଇନରେ ପରିଣତ ହେଲା । ଏହି ଆଇନ୍ ଅନୁସାରେ ଏକ ପ୍ରାଦେଶିକ ଭୂଦାନ ଯଜ୍ଞ ସମିତି ଗଠିତ ହେଲା । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଭୂଦାନ ଆନ୍ଦୋଳନରେ ଆଗ୍ରହୀ ଥିବାରୁ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଏହାର ଉତ୍ତମ ପ୍ରଗତି ସାଧିତ ହୋଇଥିଲା ।

୧୯୫୨ ମସିହା ଅକ୍ଟୋବର ୨ ତାରିଖରୁ ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀ ଦ୍ୱିତୀୟ ଥର ପାଇଁ ପଦଯାତ୍ରା ଆରମ୍ଭ କଲେ ଏବଂ ଭଦ୍ରକ, ବାଲେଶ୍ୱର, ମୟୂରଭଞ୍ଜ ଓ କେନ୍ଦୁଝରରେ ବୁଲିଲେ ଏବଂ ଭୂମି ସଂଗ୍ରହ କଲେ । ପରେ ଅନ୍ୟ ଭୂଦାନ କର୍ମୀମାନେ ଗାଁମାନଙ୍କରେ ବୁଲି ଭୂମି ସଂଗ୍ରହ କଲେ । କସ୍ତୁରବା ସ୍ମାରକୀ ନିଧି, ଉତ୍କଳ ଖଦୀମଣ୍ଡଳ ଗାନ୍ଧୀ ସ୍ମାରକ ନିଧି ଓ ଉତ୍କଳ ନବଜୀବନ ମଣ୍ଡଳର କର୍ମୀମାନେ ଭୂଦାନ ପାଇଁ କାର୍ଯ୍ୟ କଲେ । କୋରାପୁଟ ଜିଲ୍ଲାରେ ନବଜୀବନ ମଣ୍ଡଳର ସଭାପତି ବିଶ୍ୱନାଥ ପଟ୍ଟନାୟକ ଏବଂ ତାଙ୍କର କୃଜେନ୍ଦ୍ରୀ କେନ୍ଦ୍ରର କର୍ମୀମାନେ ଉଭୟ ଆଦିବାସୀ କଲ୍ୟାଣ ଓ ଭୂଦାନ ପାଇଁ କାର୍ଯ୍ୟ କଲେ ।

୧୯୫୩ ମସିହା ଜାନୁଆରୀ ମାସ ଶେଷ ଆଡ଼କୁ ତତ୍କାଳୀନ କେନ୍ଦ୍ରାପଡା ସବ୍‌ଡିଭିଜନର ମାନପୁର ଗାଁର ସବୁ ବାସିନ୍ଦାମାନେ ଗାଁର ସବୁ ଜମି ଭୂଦାନ ପାଇଁ ଦେଇଦେଲେ ବୋଲି ଦାନପତ୍ର ଲେଖିଦେଲେ । ୧୯୫୩ ମସିହା ବୁଦ୍ଧ ପୂର୍ଣ୍ଣିମା ଦିନ ଗୋପବନ୍ଧୁ ଚୌଧୁରୀ, ରମାଦେବୀ ଓ ଆଚାର୍ଯ୍ୟ ହରିହର ଆଦି ସର୍ବୋଦୟ ନେତାଙ୍କ ଉପସ୍ଥିତିରେ ଏହି ଗ୍ରାମର ଜମିଗୁଡିକ ବଣ୍ଟା ହେଲା । ଏହି କାର୍ଯ୍ୟକ୍ରମ ବହୁଳ ଭାବରେ ପ୍ରଚାରିତ ହୋଇଥିଲା । ଏହା ଥିଲା ସାରା ଭାରତରେ ଦ୍ୱିତୀୟ ଗ୍ରାମଦାନ । ଏହି ଗ୍ରାମରେ ଏକ ଗ୍ରାମସେବା କେନ୍ଦ୍ର ସ୍ଥାପିତ ହୋଇଥିଲା । କିନ୍ତୁ ଏହି ଗ୍ରାମଦାନ ତିଷ୍ଠିପାରିଲା ନାହିଁ । ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁ ପରେ ନ୍ୟସ୍ତସ୍ୱାର୍ଥ ଲୋକମାନଙ୍କ ହସ୍ତକ୍ଷେପ ଫଳରେ ଏହା ଗ୍ରାମଦାନ ତାଲିକାରୁ କଟିଗଲା ।

ଗ୍ରାମଦାନ ଚିନ୍ତାଧାରା ଭୂଦାନଠାରୁ ଉନ୍ନତତର ସୋପାନ । ଏହାକୁ ଆଦର୍ଶ ଅହିଂସକ ଗ୍ରାମଗଠନ ପାଇଁ ପ୍ରାରମ୍ଭିକ ପଦକ୍ଷେପ ବୋଲି ବିଚାର କରାଯାଉଥିଲା । ଗ୍ରାମଦାନର ସ୍ୱରୂପ ସମ୍ବନ୍ଧରେ ମନମୋହନ ଚୌଧୁରୀ ନିମ୍ନଲିଖିତ ମତ ଦେଇଛନ୍ତି ।

ଗ୍ରାମଦାନର ଏବେ ଚାରୋଟି ସର୍ତ୍ତ ରହିଛି:

୧) ଗ୍ରାମଦାନରେ ଯୋଗ ଦେଉଥିବା ସମସ୍ତ ଗ୍ରାମବାସୀ ନିଜର ସମସ୍ତ ଜମିର ମାଲିକାନା ତ୍ୟାଗ କରିବେ । ଜମି ଗାଁର କୋଠ ସମ୍ପତ୍ତି ହେବ । ଏ ଜମି ଆଉ ବିକ୍ରି ବନ୍ଧକ ହୋଇପାରିବ ନାହିଁ ।

୨) ଗ୍ରାମ ଦାନ ପୂର୍ବରୁ ଯାହାଠାରେ ଯେତେ ଜମି ଥିଲା, ତାର ଅନ୍ୟୂନ କୋଡିଏ ଭାଗରୁ ଭାଗେ ଗାଁର ଭୂମିହୀନ ବା ଅତି ଅଳ୍ପ ଜମିଥିବା ଲୋକଙ୍କୁ ବଣ୍ଟାଯିବ । ବାକି ଉଣେଇଶ ଭାଗ ଭୂତପୂର୍ବ ମାଲିକ ଚାଷ କରିବେ ।

୩) ଗାଁର ସମସ୍ତ ସାବାଳକଙ୍କୁ ନେଇ ଗାଁରେ ଏକ ଗ୍ରାମସଭା ଗଢା ହେବ । ଗାଁର ସବୁପ୍ରକାର ଉନ୍ନତିର ଯୋଜନା ଗ୍ରାମସଭା କରିବେ । ଗାଁରେ ଯେପରି କେହି ଉପାସ, ବେକାର, ନିରକ୍ଷର ବା ଅସୁସ୍ଥ ନ ରହନ୍ତି, ତାହା ଦେଖିବା ଗ୍ରାମସଭାର କାମ ହେବ ।

୪) ପ୍ରତ୍ୟେକ ଗ୍ରାମବାସୀ ଆପଣା ଆୟର ଗୋଟିଏ ଅଂଶ କୋଡିଏ ଭାଗରୁ ଭାଗେ ଗ୍ରାମସଭାକୁ ପ୍ରତିବର୍ଷ ଦାନ କରିବେ । ଏହା ଗାଁର କୃଷି ଓ ଶିଳ୍ପର ଉନ୍ନତି ପାଇଁ ପୁଞ୍ଜି ଭାବରେ ବ୍ୟବହୃତ ହେବ । କୌଣସି ଗାଁର ଅନ୍ୟୂନ ଶତକଡା ୭୫ ଭାଗ ଭୂମି ମାଲିକ ସାବାଳକ ଲୋକ ଗ୍ରାମଦାନ ସପକ୍ଷରେ ମତ ଦେଲେ ଓ ମୋଟ ଜମିର ଅନ୍ୟୂନ ୫୦ଭାଗ ଦାନ ମିଳିଲେ ସେ ଗାଁ ଗ୍ରାମଦାନ ଆଖ୍ୟା ପାଇବ । ଏଥିରୁ କମ୍ ହେଲେ ତାକୁ ଆଂଶିକ ଗ୍ରାମଦାନ ବା ଗ୍ରାମ ପରିବାର କୁହାଯିବ । ଗ୍ରାମଦାନ ସମ୍ପର୍କରେ ସର୍ବୋଦୟ ନେତାମାନଙ୍କର ମତାମତକୁ ବିଶ୍ୱନାଥ ଟଣ୍ଡନ ନିମ୍ନଭାବରେ ବ୍ୟାଖ୍ୟା କରିଛନ୍ତି: 'ସର୍ବୋଦୟ ଦାର୍ଶନିକମାନେ ପରିସ୍ଥିତିକୁ ବିଚାର କରି ସାଧାରଣତଃ ଗ୍ରାମ୍ୟ ଭାରତର ପୁନର୍ଗଠନ ସମ୍ବନ୍ଧରେ ଚିନ୍ତା କରିଛନ୍ତି । ସେମାନେ ଜମି ଉପରେ ଗ୍ରାମର ମାଲିକାନା ସପକ୍ଷରେ ମତ ଦିଅନ୍ତି, କିନ୍ତୁ ସେମାନେ କୌଣସି ନିର୍ଦ୍ଦିଷ୍ଟ କୃଷି ପଦ୍ଧତିର ପକ୍ଷପାତୀ ନୁହନ୍ତି । ପରୀକ୍ଷାନିରୀକ୍ଷା କରି କେଉଁ କୃଷି ପଦ୍ଧତି ସ୍ପୃହଣୀୟ, ତାହା ସ୍ଥିର କରିବା ଗ୍ରାମମାନଙ୍କ ଉପରେ ଛଡାଯାଇଛି । କିନ୍ତୁ ପୂର୍ଣ୍ଣ ଗ୍ରାମଦାନ ଗ୍ରାମମାନଙ୍କର ପ୍ରଚଳିତ ପ୍ରଥା ହେଉଛି କିଛି ଜମିଗୁଡିକ ପରିବାରମାନଙ୍କ ମଧ୍ୟରେ ଆବଶ୍ୟକତା ତଥା ସାମ୍ୟନୀତି ଅନୁସାରେ ବଣ୍ଟନ କରାଯିବ । କିଛିକାଳ ପରେ ପରିବର୍ତ୍ତିତ ପରିସ୍ଥିତିକୁ ବିଚାର କରି ବଣ୍ଟନର ପୁନର୍ବିଚାର କରାଯିବ । ବ୍ୟକ୍ତିଗତ ଭାବରେ ବିନୋବାଜୀ ସମବାୟ କୃଷିକୁ ପସନ୍ଦ କରନ୍ତି କିନ୍ତୁ ପ୍ରଥମେ ସେ ସ୍ୱତଃପ୍ରବୃତ୍ତ ସେବା ସମବାୟ ମାଧ୍ୟମରେ ଏହା ଆରମ୍ଭ କରିବା ଚାହାନ୍ତି ।

୧୯୫୫ ମସିହା ଜାନୁଆରୀ ୨୬ ତାରିଖ ଦିନ ବିନୋବା ଭାବେ ପଶ୍ଚିମବଙ୍ଗରୁ ଆସି ଓଡ଼ିଶାର ଲକ୍ଷ୍ମଣନାଥଠାରେ ପହଞ୍ଚିଲେ । ସେଠାରେ ଏକ ବିରାଟ ସଭାରେ ଘୋଷଣା କରାଗଲା ଯେ ଓଡ଼ିଶାରେ ଏକ ଲକ୍ଷ ପନ୍ଦର ହଜାର ଏକର ଭୂଦାନ ମିଳିଛି ଏବଂ ଗ୍ରାମଦାନର ସଂଖ୍ୟା ଛୟାଳିଶ । ମାର୍ଚ୍ଚ ୨୦ ତାରିଖ ଦିନ ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଓ କଟକରେ ପଦଯାତ୍ରା କରି ପୁରୀରେ ଅଖିଳ ଭାରତୀୟ ସର୍ବୋଦୟ ସମ୍ମିଳନୀରେ ସେ ପହଞ୍ଚିଲେ । ପୁରୀରେ ବାରଦିନ ରହି ବିନୋବା ଏପ୍ରିଲ ମାସରେ ଦକ୍ଷିଣ ଓଡ଼ିଶାକୁ ଯାତ୍ରା କରିଥିଲେ । ୧୯୫୫ ମସିହା ମେ ୩୧ ତାରିଖରୁ ସେ କୋରାପୁଟ ଜିଲ୍ଲାରେ ପଦଯାତ୍ରା ଆରମ୍ଭ କଲେ । ଏହି ଜିଲ୍ଲାରେ ୧୯୫୨ରେ ସର୍ବୋଦୟ ନେତାମାନେ ଆଦିବାସୀଙ୍କୁ ନ୍ୟାଯ୍ୟ ଅଧିକାର ଦେବା ପାଇଁ ଭୂ ସତ୍ୟାଗ୍ରହ ଆୟୋଜନ କରିଥିଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନିବେଦନରେ ଏହି ସତ୍ୟାଗ୍ରହ ସ୍ଥଗିତ ହୋଇଥିଲା ଏବଂ ଆଦିବାସୀମାନେ କୋର୍ଟ୍ ଜରିଆରେ ସରକାରଙ୍କଠାରୁ ନ୍ୟାୟ ପାଇଥିଲେ । ଆଦିବାସୀ ଅଧ୍ୟୁଷିତ କୋରାପୁଟ ଜିଲ୍ଲାରେ ବିନୋବାଭାବେ ଚାରିମାସ ବୁଲିଥିଲେ । ସେ ବିଶ୍ୱନାଥ ପଟ୍ଟନାୟକଙ୍କ ଦ୍ୱାରା ପରିଚାଳିତ କୁଜେନ୍ଦ୍ରୀ କେନ୍ଦ୍ରରେ ସାତଦିନ ରହିଥିଲେ ।

କୋରାପୁଟ ଜିଲ୍ଲାରେ ଭୂଦାନ ଆନ୍ଦୋଳନକୁ ସଫଳ କରିବା ପାଇଁ ବହୁ ସର୍ବୋଦୟ ନେତା ଓ କର୍ମୀ ଯଥା– ଗୁଣନିଧି ମହାନ୍ତି, ମନମୋହନ ଚୌଧୁରୀ, ରମାଦେବୀ, ରତନ ଦାସ, ଶାନ୍ତି ଦେବୀ, ବୃନ୍ଦାବନ ଜେନା, ଅଲେଖ ପାତ୍ର, ନିଶାକର ଦାସ, ବାଜୀ ମହମ୍ମଦ ଓ ବିଶ୍ୱନାଥ ପଟ୍ଟନାୟକ ଲାଗି ପଡିଥିଲେ । ଏହି ଜିଲ୍ଲାରେ ଭୂଦାନ କର୍ମୀମାନେ ଭୂମି ବଣ୍ଟନ କରିବା ସଙ୍ଗେ ଯକ୍ଷ୍ମା ରୋଗ ଦୂରୀକରଣ ପାଇଁ କାର୍ଯ୍ୟ କରୁଥିଲେ । ଏଥିପାଇଁ ଭୂଦାନ ତଥା ନବଜୀବନ ମଣ୍ଡଳର କର୍ମୀମାନେ ତାଲିମ ନେଇଥିଲେ । କୋରାପୁଟରେ ସର୍ବୋଦୟ କର୍ମୀଭାବେ କାର୍ଯ୍ୟ କରିଥିବା ରାଜକନିକାର ଡାକ୍ତର ନିର୍ମଳ ଚନ୍ଦ୍ର ଦାସ ଲେଖିଛନ୍ତି ଯେ ତିନି ମାସ ମଧ୍ୟରେ ଚାରି ହଜାର ଯକ୍ଷ୍ମା ରୋଗୀ ରୋଗମୁକ୍ତ ହୋଇଥିଲେ । କୁଷ୍ଠରୋଗ ପରି ଯକ୍ଷ୍ମାରୋଗ ଏକ ସଂକ୍ରାମକ ବ୍ୟାଧି, ଏହା ଫ୍ରାମ୍ବୋସିଆ ନାମକ ଜୀବାଣୁ ଦ୍ୱାରା ସଂକ୍ରମିତ ହୁଏ ଏବଂ ମଣିଷକୁ ପଙ୍ଗୁ କରିଦିଏ । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ମାଧ୍ୟମରେ ଯକ୍ଷ୍ମା ରୋଗର ଚିକିତ୍ସା ପାଇଁ ଏକ ଶିକ୍ଷା ଶିବିର ମାଲକାନ୍‌ଗିରିଠାରେ ଅନୁଷ୍ଠିତ ହୋଇଥିଲା । କୋରାପୁଟ ଜିଲ୍ଲାରେ ପ୍ରାୟ ହଜାରେ ପାଖାପାଖି ଗ୍ରାମଦାନ କରାଯାଇଥିଲା । ୧୯୫୭ ମସିହାରେ ଜୟପୁର ସହରରେ ଏକ ବିରାଟ ସମାବେଶରେ ସର୍ବୋଦୟ ନେତା ଶଙ୍କରରାଓ ଦେଓ କୋରାପୁଟକୁ ଏକ 'ଜିଲ୍ଲାଦାନ' ଜିଲ୍ଲା ବୋଲି ଘୋଷଣା କରିଥିଲେ । କୋରାପୁଟ ଜିଲ୍ଲାରେ ଗ୍ରାମ ପୁନର୍ଗଠନ ପାଇଁ ବିନୋବାଙ୍କ ଡାକରାରେ ଆନ୍ନା ସାହେବ ସହସ୍ର ବୁଦ୍ଧେ ସେହି କାର୍ଯ୍ୟର ଦାୟିତ୍ୱ ନେଇଥିଲେ । କୋରାପୁଟରେ ଭୂଦାନ ଆନ୍ଦୋଳନର ଅଗ୍ରଗତି ସମ୍ବନ୍ଧରେ ସର୍ବୋଦୟ ନେତା ରତନ ଦାସ ନିମ୍ନଲିଖିତ ମତାମତ ଦେଇଛନ୍ତି । 'ଗ୍ରାମଦାନ ଆନ୍ଦୋଳନ ଆଦିବାସୀମାନଙ୍କ ଦ୍ୱାରା ବିଶେଷ ଭାବରେ ସମର୍ଥନ ପାଇଥିଲା । ପରସ୍ପରର ସୁଖଦୁଃଖକୁ ବାଣ୍ଟି ବଞ୍ଚିବା ତ ତାଙ୍କ ଜୀବନ ଜୀଇଁବାର ଏକ କଳା । ତେଣୁ ସେମାନଙ୍କଠାରୁ ଜମି ସଂଗ୍ରହ କରି ତାହାକୁ ଗ୍ରାମ କମିଟି ଉପରେ ନ୍ୟସ୍ତ କରିବା କାର୍ଯ୍ୟ ସହଜ ହୋଇଥିଲା । ସମଗ୍ର ଭାରତବର୍ଷରେ କୋରାପୁଟ ଜିଲ୍ଲାରେ ସବୁଠାରୁ ବେଶୀ ଗ୍ରାମଦାନ ହୋଇଥିଲା । ମୁଁ କୋରାପୁଟ ଜିଲ୍ଲାର ସମସ୍ତ ଅଞ୍ଚଳ ବୁଲିବୁଲି ଗ୍ରାମଦାନ ସଂଗ୍ରହରେ ଲାଗିପଡିଥିଲି । ମୁଁ ଜିଲ୍ଲା ସଂଚାଳକ ଥିଲି । ବିନୋବାଜୀଙ୍କର ଓଡ଼ିଶା ଗସ୍ତ ସମୟରେ କୋରାପୁଟରେ

୧୯୫୫ ମସିହାରେ ପଦଯାତ୍ରା କଲାବେଳେ ସେଠାରେ ଗ୍ରାମଦାନର ସୁଅ ଛୁଟିଥିଲା । ସେତେବେଳର ଉତ୍ସାହ ଅବର୍ଣ୍ଣନୀୟ ।

ବାଲେଶ୍ୱର ଜିଲ୍ଲାରେ ଆଚାର୍ଯ୍ୟ ହରିହର ଦାସ, ରମାଦେବୀ, ଈଶ୍ୱରଲାଲ ବ୍ୟାସ ଓ ଶରତ ଚନ୍ଦ୍ର ମହାରଣା ଆଦିଙ୍କ ପ୍ରଚେଷ୍ଟାରେ ୯୦,୦୦୦ ଏକର ଭୂଦାନ ଜମି ରୂପେ ଗୃହୀତ ହୋଇଥିଲା ଏବଂ ଏହି ଜମିକୁ ୩୧୦୦ ଭୂମିହୀନ କୃଷକମାନଙ୍କ ମଧ୍ୟରେ ବଣ୍ଟା ଯାଇଥିଲା ।

୧୯୫୬ ମସିହା ନଭେମ୍ବର ମାସରେ ତାମିଲନାଡୁର ପାଲାନିଠାରେ ଅନୁଷ୍ଠିତ ସର୍ବୋଦୟ ସମ୍ମିଳନୀରେ ବିନୋବା ଭାବେ ଭୂଦାନ–ଗ୍ରାମଦାନ ଆନ୍ଦୋଳନକୁ ଦୁଇଟି ନୂଆ ଦିଗ୍‌ଦର୍ଶନ ଦେଲେ । ତାହା ହେଲା ନିଧିମୁକ୍ତି ଓ ତନ୍ତ୍ରମୁକ୍ତି । ନିଧିମୁକ୍ତିର ଅର୍ଥ ହେଲା ଭୂଦାନ କର୍ମୀମାନେ ପୂର୍ବଭଳି ଗାନ୍ଧୀ ସ୍ମାରକ ନିଧି, କସ୍ତୁରବା ନିଧି ଟ୍ରଷ୍ଟ ବା ଉତ୍କଳ ଖଦୀ ମଣ୍ଡଳ ଭଳି ସଂସ୍ଥାମାନଙ୍କଠାରୁ ମାସିକ ଭତ୍ତା ବା ଗସ୍ତ ଖର୍ଚ୍ଚ ପାଇବେ ନାହିଁ । ସେମାନେ ସ୍ଥାନୀୟ ଲୋକଙ୍କଠାରୁ ଯାହା ସାହାଯ୍ୟ ପାଇବେ ସେଥିରେ ଚଳିବେ । ତନ୍ତ୍ରମୁକ୍ତିର ଅର୍ଥ ହେଲା ଯେ କାମର ପରିଚାଳନା କୌଣସି କେନ୍ଦ୍ରୀଭୂତ ସଂସ୍ଥା ମାଧ୍ୟମରେ କରାଯିବ ନାହିଁ । କର୍ମୀମାନଙ୍କୁ ଉପରୁ 'ନିର୍ଦ୍ଦେଶ' ଦିଆଯିବ ନାହିଁ । ସେମାନେ ଆନ୍ଦୋଳନର ଲକ୍ଷ୍ୟ, ନୀତି, କାର୍ଯ୍ୟକ୍ରମ ଆଦି ବୁଝି ନିଜ ନିଜ ବୁଦ୍ଧିରେ ଓ ଛୋଟ ଛୋଟ ଭାଇଚାରା ଆକାରରେ କାମ କରିବେ । ଉପରୁ ପରିଚାଳିତ ସଂସ୍ଥା ମାଧ୍ୟମରେ ବିପ୍ଳବ ହୋଇପାରିବ ନାହିଁ । ବିପ୍ଳବ ପାଇଁ ଯେଉଁ ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ଲୋଡ଼ା ତାହା ପାଇଁ ସଂସ୍ଥାର ବନ୍ଧନରୁ ମୁକ୍ତି ଲୋଡ଼ା ।

୧୯୫୬ ମସିହା ଅକ୍ଟୋବର ମାସରେ ଗୋପବନ୍ଧୁ ଚୌଧୁରୀଙ୍କ ସାନଭାଇ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଭୂଦାନ ଆନ୍ଦୋଳନରେ ଯୋଗ ଦେଲେ । ମୁଖ୍ୟମନ୍ତ୍ରିତ୍ୱ ଛାଡିବା ସଙ୍ଗେ ସେ କଂଗ୍ରେସ ଦଳରୁ ଇସ୍ତଫା ଦେଇଥିଲେ । ତାଙ୍କୁ ସର୍ବଭାରତୀୟ ସର୍ବସେବା ସଂଘର ସଭାପତି କରାଯାଇଥିଲା । ନବକୃଷ୍ଣ ମୁଖ୍ୟମନ୍ତ୍ରିତ୍ୱ ଛାଡିବା ଫଳରେ ସରକାର ତରଫରୁ ଭୂଦାନ ଆନ୍ଦୋଳନକୁ ଯେଉଁ ସମର୍ଥନ ମିଳୁଥିଲା, ତାହା ମିଳିଲା ନାହିଁ । କାରଣ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବ ଭୂଦାନ ଆନ୍ଦୋଳନର ବିରୋଧୀ ଥିଲେ । ସେ ସର୍ବୋଦୟ କର୍ମୀମାନଙ୍କ ଦ୍ୱାରା ଭୂମି ବଣ୍ଟନକୁ ଦାରିଦ୍ର୍ୟ ବଣ୍ଟନ ବୋଲି କହୁଥିଲେ । ପୂର୍ବରୁ ତାଙ୍କର ଗୋପବନ୍ଧୁ ଚୌଧୁରୀଙ୍କ ସହିତ ମତ ପାର୍ଥକ୍ୟ ଲାଗି ରହିଥିଲା । ମହତାବ ସରକାରଙ୍କ ବିରୋଧର ପ୍ରଭାବ ସମ୍ପର୍କରେ ନବକୃଷ୍ଣ ଚୌଧୁରୀଙ୍କ ଜୀବନର ଲେଖକ ପଦ୍ମଚରଣ ନାୟକଙ୍କ ମନ୍ତବ୍ୟ ଏଠାରେ ଉଲ୍ଲେଖଯୋଗ୍ୟ–

ସେ (ମହତାବ) ମୁଖ୍ୟମନ୍ତ୍ରୀ ହୋଇ ଆସିବା ପରେ ଯେଉଁମାନେ ଚାପର ବଶବର୍ତ୍ତୀ ହୋଇ ବା ଆନ୍ତରିକତା ହୀନ ଭାବରେ ଦାନପତ୍ରରେ ସ୍ୱାକ୍ଷର କରିଥିଲେ, ସେମାନେ ନିଜ ଜମି ଛାଡିଲେ ନାହିଁ । ମୋଟ ଉପରେ କହିବାକୁ ଗଲେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଗଲାପରେ ଭୂଦାନ ବିରୋଧୀ ହାୱା ବଢିଲା । ଯେଉଁ କୋରାପୁଟରେ ପ୍ରାୟ ୮୦୦ ପର୍ଯ୍ୟନ୍ତ ଗ୍ରାମଦାନ ହୋଇଥିଲା ବୋଲି କୁହାଯାଉଥିଲା ଏବଂ ଯେଉଁଠି ଓଡ଼ିଶା ସମେତ ଭାରତବର୍ଷର ବହୁ ଅଞ୍ଚଳର ସ୍ୱେଚ୍ଛାସେବୀ ଆସି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନୂତନ ଜାଗରଣ ସୃଷ୍ଟି କରିଥିଲେ ଏବଂ ଲୋକଙ୍କ ମନରୁ ଭୟ ଦୂର କରିବା ଦିଗରେ ସମର୍ଥ ହୋଇଥିଲେ, ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରିତ୍ୱରୁ ଯିବାପରେ ସେଠାକାର ସରକାରୀ କର୍ମଚାରୀ ଓ ସାହୁକାର ଆଦି ନ୍ୟସ୍ତସ୍ୱାର୍ଥ ଶ୍ରେଣୀର ଲୋକ ଭୂଦାନ ଓ ଗ୍ରାମଦାନ ତଥା ସେଥିରେ ନିଯୁକ୍ତ ଥିବା କର୍ମୀମାନଙ୍କ ବିରୋଧରେ ମୁଖର ହୋଇଉଠିଲେ । ନାୟକଙ୍କ ମତରେ ପ୍ରାୟ ୫୦ଟି ଗ୍ରାମରେ 'ଗ୍ରାମଦାନର ଛାପ ବର୍ତ୍ତମାନ ପର୍ଯ୍ୟନ୍ତ ରହିଛି ।'

୧୯୫୭ ମସିହା ସୁଦ୍ଧା ସମଗ୍ର ଭାରତରେ ଭୂମି ସଂଗ୍ରହ ଓ ବଣ୍ଟନ ଶେଷ କରି ଗ୍ରାମ ପୁନର୍ଗଠନ କାର୍ଯ୍ୟରେ ଲାଗିଯିବା ପାଇଁ ବିନୋବା କର୍ମୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ୧୯୫୮ରେ ଉତ୍କଳ ସର୍ବୋଦୟ ମଣ୍ଡଳ ଗଠିତ ହୋଇଥିଲା । ୧୯୫୮ ଏପ୍ରିଲ ୨୯ ତାରିଖ ଦିନ ଗୋପବନ୍ଧୁ ଚୌଧୁରୀ କଟକ ଥୋରିଆ ସାହିରେ ପ୍ରାଣତ୍ୟାଗ କଲେ । ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁପରେ ମୁଖ୍ୟତଃ ୪ଟି ଜିଲ୍ଲା କୋରାପୁଟ, ଗଞ୍ଜାମ, ବାଲେଶ୍ୱର ଓ ମୟୂରଭଞ୍ଜରେ ଭୂଦାନ ଆନ୍ଦୋଳନ ଧୀରେ ଧୀରେ ଆଗେଇ ଚାଲିଲା । କୋରାପୁଟରେ ସଦାଶିବ ତ୍ରିପାଠୀଙ୍କ ଆଗ୍ରହ ଯୋଗୁଁ ସରକାରୀ ସହଯୋଗ ମିଳିଲା । ଫକୀର ମିଶ୍ରଙ୍କ ଚେଷ୍ଟାରେ ପାଣ୍ଠି ସଂଗ୍ରହ ଆଗେଇଲା । ୧୯୫୮ ମସିହା ଅଗଷ୍ଟ ମାସ ୧୫ ତାରିଖ ଦିନ ଅଶୀବର୍ଷ ବୟସରେ ଆଚାର୍ଯ୍ୟ ହରିହର ଦାସ ଦୃଷ୍ଟିହୀନତା ସତ୍ତ୍ୱେ ବାଲେଶ୍ୱର ଜିଲ୍ଲା ନାମ୍ପୋ ଗ୍ରାମରୁ ପଦଯାତ୍ରା ଆରମ୍ଭ କରିଥିଲେ ।

୧୯୬୩ ମସିହା ଅଗଷ୍ଟ ମାସରେ ବିନୋବା ଭାବେ ପଦଯାତ୍ରା ପାଇଁ ଦ୍ୱିତୀୟ ଥର ଓଡ଼ିଶା ଆସିଥିଲେ । ସେ ମୟୂରଭଞ୍ଜ, ବାଲେଶ୍ୱର, କଟକ, ଢେଙ୍କାନାଳ, ବଣେଇ, ସୁନ୍ଦରଗଡ, ସମ୍ବଲପୁର, ବଲାଙ୍ଗିର ଓ କଳାହାଣ୍ଡି ଜିଲ୍ଲାରେ ପଦଯାତ୍ରା କରି ମଧ୍ୟପ୍ରଦେଶ ଆଡେ ଯାଇଥିଲେ । ୧୯୬୯ରେ ବିନୋବା

ତୃତୀୟ ଥର ପାଇଁ ଓଡ଼ିଶା ଗସ୍ତରେ ଆସିଥିଲେ ସେତେବେଳକୁ କୋରାପୁଟରେ ନକ୍ସଲପନ୍ଥୀମାନେ ଆଦିବାସୀମାନଙ୍କୁ ସଂଗଠିତ କରିବାକୁ ଆରମ୍ଭ କଲେଣି । ୧୯୬୯ ମସିହା ଅକ୍ଟୋବର ମାସରେ କୋରାପୁଟ ଜିଲ୍ଲାର ଗରଣ୍ଡା ଗାଁରେ ଦୀନବନ୍ଧୁ ଚୌଧୁରୀଙ୍କୁ ହତ୍ୟା କରାଗଲା । ଏହି ହତ୍ୟାକାଣ୍ଡ ନକ୍ସଲପନ୍ଥୀମାନେ ଘଟାଇଛନ୍ତି ବୋଲି ଲୋକେ କହିଲେ । ଶେଷରେ ଭୂଦାନ ଆନ୍ଦୋଳନର ବ୍ୟର୍ଥତାରେ ବ୍ୟଥିତ ଭୂଦାନ ନେତା ନବକୃଷ୍ଣ ଚୌଧୁରୀ ନକ୍ସଲପନ୍ଥୀ କାର୍ଯ୍ୟକଳାପ ପ୍ରତି ଆକୃଷ୍ଟ ହୋଇଥିଲେ ।

୧୯୭୦ ମସିହା ବେଳକୁ କୋରାପୁଟରେ ଭୂଦାନ ଆନ୍ଦୋଳନ ଧିମେଇ ଯାଇଥିଲା । ଏଥିପାଇଁ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନଙ୍କର ଚକ୍ରାନ୍ତ ଓ ସରକାରୀ କଳର ନିଷ୍କ୍ରିୟତାକୁ ଦାୟୀ କରାଯାଏ । ୨୦୦୩ରେ ଗ୍ରାମଦାନ ଆନ୍ଦୋଳନର ସ୍ଥିତି ବର୍ଣ୍ଣନା କରି ଏଇ ଆନ୍ଦୋଳନ ସହିତ ସମ୍ପୃକ୍ତ ଏକ ବ୍ୟକ୍ତି ଲେଖିଥିଲେ, '୧୯୬୫ ପର୍ଯ୍ୟନ୍ତ ବିନୋବାଙ୍କର ଗ୍ରାମଦାନ ଧୀର ଗତିରେ ଚାଲିଲା । ୧୯୭୦ ବେଳକୁ ଦେଶର ପ୍ରାୟ ୧,୬୦,୦୦୦ ଗ୍ରାମ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇପାରିଲା । କିନ୍ତୁ କାଗଜପତ୍ରରେ ଏହାକୁ କାର୍ଯ୍ୟକାରୀ କରିବା ଏବଂ ବାସ୍ତବ କ୍ଷେତ୍ରରେ ଏହାର ରୂପାୟନ ଖୁବ୍ କଠିନ ଥିଲା । ଅଳ୍ପ କେତେକ ଗ୍ରାମ ହିଁ ଗ୍ରାମ ପରିଷଦକୁ ସେମାନଙ୍କର ଜମି ହସ୍ତାନ୍ତର କଲେ । ତେଣୁ ଏହି ଆନ୍ଦୋଳନ ପୂର୍ଣ୍ଣରୂପ ଗ୍ରହଣ କରି ପାରିଲା ନାହିଁ । ତେବେ ଆଜି ମଧ୍ୟ ପ୍ରାୟ ୧୦୦ ଗ୍ରାମରେ ଏହି କାର୍ଯ୍ୟକ୍ରମ ଚାଲୁ ରହିଛି । ଭାରତରେ ଗାନ୍ଧୀ ଆନ୍ଦୋଳନର ସନ୍ତକ ହୋଇ ଏହି ଗ୍ରାମଗୁଡ଼ିକ ରହିଛି ।

ଗ୍ରାମଦାନ ଆନ୍ଦୋଳନର ଦୁଇଟି ସ୍ତର ଥିଲା । ପ୍ରଥମ ସ୍ତର ଥିଲା ଭୂମି ସଂଗ୍ରହ ଏବଂ ଦ୍ୱିତୀୟ ସ୍ତର ଥିଲା ଭୂମି ବଣ୍ଟନ । ଉଭୟ ସ୍ତରରେ ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହୋଇଥିଲା । ବହୁତ ଲୋକ ଜମିଦେବେ ବୋଲି ପ୍ରତିଶ୍ରୁତି ଦେଇ ପରେ ଗ୍ରାମଦାନ ସଂକଳ୍ପରେ ଦସ୍ତଖତ କରି ନଥିଲେ । ଏ ସମ୍ବନ୍ଧରେ ମନମୋହନ ଚୌଧୁରୀ ଲେଖିଛନ୍ତି: ' ମଝିରେ ମଝିରେ ଅଭିଯୋଗ ଶୁଣାଯାଉଥାଏ ଯେ ଗ୍ରାମଦାନର ସଂକଳ୍ପ ପତ୍ରସବୁ ମିଛମିଛକା ପୂରଣ କରି ସଂଖ୍ୟା ବଢ଼େଇ ଦିଆଯାଉଛି । ସରକାରୀ କର୍ମଚାରୀମାନେ ଏପରି ବେଶୀ କରୁଛନ୍ତି ବୋଲି ଅଭିଯୋଗ ହେଉଥାଏ ଓ ପୁଣି ଅନ୍ୟ ସାଧାରଣ କର୍ମୀଙ୍କ ବିଷୟରେ ମଧ୍ୟ ।' ବିନୋବା ପ୍ରଥମେ ଭୂମି ସଂଗ୍ରହ ବେଳେ ଏହାର ବଣ୍ଟନ କଥା ଚିନ୍ତା କରି ନଥିଲେ । ବଣ୍ଟନ ବେଳେ ପ୍ରକୃତ ସମସ୍ୟା ଉପୁଜିଲା ।

ଲୋକ ଶକ୍ତିକୁ ଜାଗ୍ରତ କରି ଭୂଦାନ ଆନ୍ଦୋଳନ ଚଳାଇବା ନୀତିଦୃଷ୍ଟିରୁ ଏହାର ପନ୍ଥା ଥିଲା । କିନ୍ତୁ ବିନୋବା ବରାବର ଭୂଦାନ ଗ୍ରାମଦାନ ଆନ୍ଦୋଳନରେ ସରକାରୀ କର୍ମଚାରୀଙ୍କର ମଧ୍ୟ ସହଯୋଗ ଚାହୁଁଥାନ୍ତି । ସେ ଚାହୁଁଥାନ୍ତି ଯେ' ସେମାନେ ସର୍ବୋଦୟ କର୍ମୀ, ରାଜନୀତିକ ଦଳର କର୍ମୀ ଓ ଅନ୍ୟ ସ୍ୱେଚ୍ଛା ସେବକଙ୍କ ସାଙ୍ଗରେ ମିଶି ଭୂଦାନ– ଗ୍ରାମଦାନ ପ୍ରଚାର ଓ ସଂଗ୍ରହ କାମ କରନ୍ତୁ । ଭୂଦାନ କାର୍ଯ୍ୟ ସରକାରୀ କର୍ମଚାରୀମାନଙ୍କ ହାତରେ ଛଡ଼ାଯିବା ଫଳରେ ଯେଉଁ ପୁରୁଣା କ୍ଷମତାତନ୍ତ୍ର ଲୋକମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିଥିଲା ତାହା କାଏମ ରହିଲା ।

ସରକାରୀ କର୍ମଚାରୀମାନେ ତାଙ୍କର ସାମ୍ବିଧାନିକ ବା ଆଇନଗତ କର୍ତ୍ତୃପକ୍ଷଙ୍କୁ ମାନି ଚଳନ୍ତି । ସର୍ବୋଦୟ ସମାଜ ଏକ ଅଣସମ୍ବିଧାନିକ ବୈପ୍ଳବିକ ସଂସ୍ଥା । ତେଣୁ ସରକାରୀ କର୍ମଚାରୀମାନେ ଠିକ୍ ଠିକ୍ ଭାବରେ ସର୍ବୋଦୟ ସମାଜର ନିର୍ଦ୍ଦେଶାନୁସାରେ କାର୍ଯ୍ୟ କରିବେ ଏହା ଆଶା କରିବା ଠିକ୍ ନୁହେଁ ।

ଯେତେବେଳେ ଯେଉଁ ରାଜନୈତିକ ଦଳ କ୍ଷମତାରେ ଥାଏ ତାଙ୍କର ରାଜନୈତିକ ଆଭିମୁଖ୍ୟଦ୍ୱାରା ସରକାର ପରିଚାଳିତ ହୁଏ । ୧୯୬୩ରେ ବିନୋବାଭାବେଙ୍କ ଓଡ଼ିଶାରେ ଦ୍ୱିତୀୟ ଓଡ଼ିଶା ପଦଯାତ୍ରା ସମୟରେ ତାଳଚେର ରହଣି ସମୟରେ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ ଭୂଦାନ ଆନ୍ଦୋଳନର ରାଜନୈତିକ ଆଭିମୁଖ୍ୟ କ'ଣ ପଚାରିଥିଲେ । ବିନୋବା ଉତ୍ତରରେ କହିଲେ 'ଭୂଦାନ ଆନ୍ଦୋଳନରେ ରାଜନୈତିକ ଆଭିମୁଖ୍ୟ ହେଉଛି ଏକ ବିକେନ୍ଦ୍ରିତ ଗଣତାନ୍ତ୍ରିକ ସାମ୍ୟବାଦକୁ ଅହିଂସା ଓ ଶାନ୍ତିପୂର୍ଣ୍ଣ ଉପାୟରେ ହାସଲ କରିବା ।' ଏହି ଆଦର୍ଶ ଯେ ସବୁ ଦଳ ଗ୍ରହଣ କରିବେ ତାହା ଆଶା କରିବା ଠିକ୍ ନୁହେଁ । ଭୂଦାନ ଆନ୍ଦୋଳନ ଓ କମ୍ୟୁନିଷ୍ଟ ଦଳର ଆଭିମୁଖ୍ୟ ସାମ୍ୟବାଦ । କିନ୍ତୁ କମ୍ୟୁନିଷ୍ଟମାନେ ଶାନ୍ତିପୂର୍ଣ୍ଣ ଉପାୟରେ ଏହି ଲକ୍ଷ୍ୟ ହାସଲ କରିବାର ପକ୍ଷପାତୀ ନଥିଲେ ।

ସର୍ବୋଦୟ ସମାଜ ଏବଂ ସରକାରଙ୍କ ମଧ୍ୟରେ ସମ୍ପର୍କ ବିଷୟରେ ଏହି ସଂସ୍ଥାରେ ସ୍ପଷ୍ଟ ଆଭିମୁଖ୍ୟ ନଥିଲା ପରି ମନେହୁଏ । ଅହିଂସା ଓ ସତ୍ୟରେ ପରିଚାଳିତ ହେଲେ ମଧ୍ୟ ସର୍ବୋଦୟ ସମାଜ ଏକ ନୈତିକ ଓ ବୈପ୍ଳବିକ ଅନୁଷ୍ଠାନ ଥିଲା । ରାଜନୈତିକ ଉଦ୍ଦେଶ୍ୟ ଦ୍ୱାରା ପ୍ରଣୋଦିତ ହୋଇ କ୍ଷମତାସୀନ ରାଜନୈତିକ ଦଳମାନେ ଆପତ୍ତିଜନକ କାର୍ଯ୍ୟ କରିପାରନ୍ତି । ୧୯୭୫ରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ତାଙ୍କର ନିର୍ବାଚନ ବିରୋଧରେ ଏଲାହାବାଦ ହାଇକୋର୍ଟର ରାୟ ପରେ ବିରୋଧୀ

ଦଳମାନଙ୍କର ଆଇନ୍ ଅମାନ୍ୟ ଆନ୍ଦୋଳନର ଧମକ୍‌କୁ ମୁକାବିଲା କରିବା ପାଇଁ ସମ୍ବିଧାନର ୩୫୨ଧାରା ଅନୁସାରେ ଆଭ୍ୟନ୍ତରୀଣ ଜରୁରିକାଳୀନ ପରିସ୍ଥିତି ଜାରି କରିଥିଲେ । ସେତେବେଳେ ଜରୁରୀ ପରିସ୍ଥିତି ଜାରି ସମ୍ପର୍କରେ ସର୍ବୋଦୟ ସମାଜରେ ମତ ପାର୍ଥକ୍ୟ ଦେଲା । ବିନୋବାଭାବେ ଇନ୍ଦିରାଙ୍କ ଜରୁରୀ ପରିସ୍ଥିତି ଜାରିକୁ ଏକ ଅନୁଶାସନ ବୋଲି କହି ଏହାକୁ ସ୍ୱାଗତ ଜଣାଇଲେ । ଅପର ପକ୍ଷରେ ସର୍ବୋଦୟ ନେତା ଜୟପ୍ରକାଶ ନାରାୟଣ ଆଇନ୍ ଅମାନ୍ୟ ଆନ୍ଦୋଳନର ନେତୃତ୍ୱ ନେଲେ । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ଓ ମନମୋହନ ଚୌଧୁରୀ ଆଦି ସର୍ବୋଦୟ ନେତାମାନେ ଜୟପ୍ରକଶ ନାରାୟଣଙ୍କୁ ସମର୍ଥନ କରି ଜେଲ ଗଲେ । ଢେଙ୍କାନାଳରେ ସର୍ବୋଦୟ ନେତା ହରମୋହନ ପଟ୍ଟନାୟକ ଜୟପ୍ରକାଶଙ୍କୁ ବିରୋଧ କଲେ ।

ଭୂଦାନ ବା ଗ୍ରାମଦାନ ଆନ୍ଦୋଳନର ମୂଳଲକ୍ଷ୍ୟ ଥିଲା ଗ୍ରାମାଞ୍ଚଳର ବିକାଶ, ସମାଜର ସାମଗ୍ରୀକ ପରିବର୍ତ୍ତନ ଏବଂ ଶ୍ରମର ମର୍ଯ୍ୟାଦାକୁ ପ୍ରତିଷ୍ଠା କରିବା । ଗ୍ରାମ ହେଉଛି ଅର୍ଥନୀତି ଓ ସମାଜର ମୂଳପିଣ୍ଡ । ଗ୍ରାମାଞ୍ଚଳରେ କୃଷି ଓ ଶିଳ୍ପର ଯଥାର୍ଥ ବିକାଶ ନହେଲେ ଦେଶର ବିକାଶ ଅସମ୍ଭବ । ଭୂଦାନ ଆନ୍ଦୋଳନ ଆରମ୍ଭରୁ ଲକ୍ଷ୍ୟଭ୍ରଷ୍ଟ ହୋଇଗଲା । ଏପରିକି ଭୂଦାନ କର୍ମୀମାନେ ଦୁର୍ନୀତିଗ୍ରସ୍ତ ହୋଇଗଲେ । ଜଣେ ଭୂଦାନ କର୍ମୀ ଏହି ଲେଖକଙ୍କୁ କହିଲେ ଯେ କୋରାପୁଟ ଜିଲ୍ଲାରେ ଏପରି ଦୁର୍ନୀତିଗ୍ରସ୍ତ ପୂର୍ବତନ ଭୂଦାନ କର୍ମୀ ଅଛନ୍ତି ଯିଏ କି ଭୂଦାନ ଜମିକୁ ହଡପ କରିଛନ୍ତି ।

ବହୁ ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ଓ ଉତ୍ସାହୀ ଯୁବକ ଯୁବତୀ ସର୍ବୋଦୟ ତଥା ଭୂଦାନ ଗ୍ରାମଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ । ବହୁତ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି ହୋଇଥିଲା । କିନ୍ତୁ ସବୁକିଛି ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଗଲା ପରି ଜଣାପଡୁଛି । ପ୍ରତିକ୍ରିୟା ସ୍ୱରୂପ ଉଗ୍ରପନ୍ଥୀ ହିଂସାକାଣ୍ଡ ଦେଖାଦେଇଛି । ଆଜିର ଆବଶ୍ୟକତା ହେଉଛି ଗ୍ରାମାଞ୍ଚଳର ବିକାଶ ପାଇଁ ସୁଚିନ୍ତିତ ଯୋଜନା ଏବଂ ସେହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ସରକାରୀ କଳର ତତ୍ପରତା ଓ ନିଷ୍ଠା । ୧୯୩୪ ମସିହାରେ ଗାନ୍ଧୀଙ୍କ ଆହ୍ୱାନ– ଚାଲ ଆମେ ଗାଁକୁ ଫେରିଯିବାକୁ କାର୍ଯ୍ୟକାରୀ କରିବା ପାଇଁ ବେଳ ଆସିଛି ।

ଏମ୍‌ଆଇଜି– ୬୮
ବରମୁଣ୍ଡା ହାଉସିଂ ବୋର୍ଡ କଲୋନୀ
ଭୁବନେଶ୍ୱର– ୭୫୧୦୦୩

**ଉପାଦାନ ପୁଞ୍ଜ:**


୧) ୩୯ତମ ସର୍ବୋଦୟ ସମାଜ ସମ୍ମିଳନୀ, ୨୦୦୩, ସ୍ମରଣିକା, ପୃ–୨୪, ଗୋଲୋକ ଚରଣ ପାତ୍ର, 'ମୋ ଜୀବନ ଉପରେ ସର୍ବୋଦୟର ପ୍ରଭାବ' ।

୨) ମନମୋହନ ଚୌଧୁରୀ, ରଚନା ସଂଗ୍ରହ, ପ୍ରଥମ ଖଣ୍ଡ–ପ୍ରଥମ ଭାଗ (୧୯୫୬–୧୯୮୮), ଶିକ୍ଷାସନ୍ଧାନ, ଭୁବନେଶ୍ୱର, ୨୦୦୮ 'ଗ୍ରାମଦାନ ଆନ୍ଦୋଳନ', ୨୦୦୮, ପୃଷ୍ଠା ୧୫୪–୧୫୫ ।

୩) ବିଶ୍ୱନାଥ ଟଣ୍ଡନ, The social and Political Philosopy of sarvoday after Gandhi, ସର୍ବସେବା ସଂଘ ପ୍ରକାଶନ ବାରାଣସୀ, ୧୯୬୫, ପୃଷ୍ଠା ୧୧୭ ।

୪) ଗୋପୀନାଥ ମହାନ୍ତି, ଧୂଳିମାଟିର ସନ୍ଥ, ବିଦ୍ୟାପୁରୀ, କଟକ, ୧୯୮୫, ପୃ– ୪୫୬ ।

୫) ୩୯ତମ ସର୍ବୋଦୟ ସମାଜ ସମ୍ମିଳନୀ, ସ୍ମରଣିକା, ପୃ–୭, ଡାକ୍ତର ନିର୍ମଳ ଚନ୍ଦ୍ର ଦାସ, 'ସର୍ବୋଦୟ ବିଚାର ପୁଷ୍ଟ ଚିକିତ୍ସା କ୍ଷେତ୍ରରେ ମୋର ଅନୁଭୂତି' ।

୬) ରତନ ଦାସ, ଅନ୍ତହୀନ ଅନ୍ୱେଷଣ, ଶିକ୍ଷାସନ୍ଧାନ, ଭୁବନେଶ୍ୱର, ୨୦୧୧, ପୃଷ୍ଠା– ୧୨୩–୪ ।

୭) ଧୂଳି ମାଟିର ସନ୍ଥ, ପୃ– ୪୭୩ ।

୮) ମନମୋହନ ଚୌଧୁରୀ, କସ୍ତୁରୀ ମୃଗ ସମ କାହାଣୀ ପ୍ରକାଶନୀ, କଟକ, ୧୯୯୫, ପୃ– ୩୧୪ ।

୯) ପଦ୍ମଚରଣ ନାୟକ, ଅନିର୍ବାଣ: ନବକୃଷ୍ଣ ଚୌଧୁରୀଙ୍କ ଜୀବନ ଓ ସମୟ, ଭୁବନେଶ୍ୱର, ୧୯୯୬, ପୃ–୨୦୪ ।

୧୦) ଅନ୍ନପୂର୍ଣ୍ଣା ମହାରଣା, ଅମୃତ ଅନୁଭବ, ଶିକ୍ଷାସନ୍ଧାନ, ଭୁବନେଶ୍ୱର, ୨୦୦୫, ପୃ– ୩୬୭ ।

୧୧) ୩୯ତମ ସର୍ବୋଦୟ ସମାଜ ସମ୍ମିଳନୀ, ସ୍ମରଣିକା, ପୃ–୬୨, ଡକ୍ଟର ବ୍ରଜଭାଇ, 'ସ୍ୱରାଜ୍ୟରୁ ସର୍ବୋଦୟ' ।

୧୨) କସ୍ତୁରୀ ମୃଗ ସମ, ପୃ– ୩୭୨ ।

୧୩) ତଦ୍ରୂପ, ପୃଷ୍ଠା– ୩୭୧ ଏବଂ ୩୭୩ ।

୧୪) ଅନ୍ତହୀନ ଅନ୍ୱେଷଣ, ପୃ– ୧୪୪ ।

# ଅରଣ୍ୟ ସମ୍ପଦର ସୁରକ୍ଷା

**ଗଣେଶ ରାମ ନାହାକ**

ହଜାର ହଜାର ବର୍ଷ ପୂର୍ବେ ସଭ୍ୟତାର ଉନ୍ମେଷ ଘଟି ନଥିଲା । ମଣିଷ ସେ ସମୟରେ ବଣ ଜଙ୍ଗଲରେ ବାସ କରୁଥିଲା । ସେହି ଅରଣ୍ୟ ମଧ୍ୟରେ ତା'ର ଗ୍ରାସ ସଂଗ୍ରହ କରି ବଞ୍ଚୁଥିଲା । ସୂର୍ଯ୍ୟୋଦୟ ପରେ ପରେ ସେ ନିଜ ଖାଦ୍ୟ ଅନ୍ୱେଷଣରେ ଘୁରୁଥିଲା, ଏ ସ୍ଥାନରୁ ସେ ସ୍ଥାନ । ପଶୁ ଶିକାର ଓ ବଣର ଫଳ ମୂଳ ହିଁ ତା'ର ଆହାର ଥିଲା । ଏକ ନିର୍ଦ୍ଦିଷ୍ଟ ବାସ ମଧ୍ୟ ନଥିଲା ତା'ର । ଖରା, ବର୍ଷା ଓ ଶୀତ ଦାଉରୁ ରକ୍ଷା ପାଇବା ପାଇଁ ସେ ଗିରି ଗହ୍ୱର ମଧ୍ୟରେ ଆଶ୍ରୟ ନେଉଥିଲା । ଧୀରେ ଧୀରେ ତାର ଚୈତନ୍ୟ ଉଦୟ ହେଲା । ଚାଷ ଓ ବାସର ପ୍ରକ୍ରିୟା ଆରମ୍ଭ କଲା । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରହି ପର୍ବତ ପାଦ ଦେଶରେ ସମତଳ ଭୂମି ଓ ପାଣି ଥିବା ସ୍ଥାନରେ ବସତି କରି ପଶୁପାଳନ କରି ଚାଷ କାର୍ଯ୍ୟ ଆରମ୍ଭ କଲା । ଏହିପରି ଛୋଟ ଛୋଟ ବସତିମାନ ଗଢ଼ି ଉଠିଲା । ଚାଷ ଓ ବାସ ଆରମ୍ଭ କଲେ ମଧ୍ୟ ଜଙ୍ଗଲଜାତ ପଦାର୍ଥ ଉପରେ ସେକାଳରୁ ମଣିଷ ଜଙ୍ଗଲ ଉପରେ ନିର୍ଭର କରି ଆସୁଅଛି । ଜଙ୍ଗଲ ହେଉଛି ବହୁ ସମ୍ପଦ ଓ ସମୃଦ୍ଧିର ଆଧାର ।



ବହୁ ବୃକ୍ଷଲତା, ଗୁଳ୍ମ ଓ ତତ୍‌ମଧ୍ୟରେ ବାସ କରୁଥିବା ବହୁ ପ୍ରଜାତିର କୀଟ ପତଙ୍ଗ ଓ ପଶୁପକ୍ଷୀର ସମାହାରର ସମଷ୍ଟିରେ ଜଙ୍ଗଲ ଜୀବନ୍ତ ଓ ପ୍ରାଣବନ୍ତ । ଚାଷବାସ ଓ ଗ୍ରାସର ପ୍ରମୁଖ ଆଧାର ହେଉଛି ଜଙ୍ଗଲ । ଭଗବାନଙ୍କର ଏହା ଏକ ବରଦାନ । ଏଥିଯୋଗୁଁ ବର୍ଷା ହେଉଛି । ବର୍ଷା ହେବା ଫଳରେ ଆମେ ଚାଷ କରୁଛେ ଏବଂ ଅନ୍ନ ଯୋଗୁଁ ଆମର ପ୍ରାଣପିଣ୍ଡ ସଚଳ ହେଉଛି । ଜଙ୍ଗଲ ଜାତ ବିଭିନ୍ନ ଫଳ, ଫୁଲ ଓ କନ୍ଦ ଜାତୀୟ ପଦାର୍ଥ ମଧ୍ୟ ମଣିଷ ସିଧା ଭକ୍ଷଣ କରି ବହୁ ଦିନ ବଞ୍ଚିଯାଇ ପାରେ । ପୂର୍ବକାଳରେ ମୁନିଋଷିମାନେ ପ୍ରକୃତି ଦତ୍ତ ଏହି ସବୁ ଖାଦ୍ୟ ଖାଇ ମାନବ ସମାଜର ହିତ ସାଧନରେ ନିମଗ୍ନ ରହୁଥିଲେ । ଆହୁରି ମଧ୍ୟ ଏହିସବୁ ସଜ ଓ ତଟକା ପଦାର୍ଥ ସେମାନେ ଗ୍ରହଣ କରୁଥିବାରୁ ବହୁଦିନ ସୁସ୍ଥ ଓ ନିରାମୟ ରହୁଥିଲେ । କିନ୍ତୁ ମଣିଷ ଶିକ୍ଷା ଓ ଦୀକ୍ଷାରେ ଅଗ୍ରଗତି କରି ଆଧୁନିକ ଯୁଗରେ ବହୁ ସୁଖ ଓ ସମୃଦ୍ଧି ହାସଲ କରିଛି । ସୂଚନା ଓ ପ୍ରଯୁକ୍ତି ବିଦ୍ୟା ଫଳରେ ନୂଆ ନୂଆ ଆବିଷ୍କାର ଓ ଉଦ୍‌ଭାବନ ହୋଇପାରୁଛି । ବିଜ୍ଞାନର ଅଗ୍ରଗତି ଫଳରେ ବହୁ କଳ କାରଖାନା, ଯାନବାହନ, ଦୂର ସଂଚାରର ବିକାଶ ଓ ପ୍ରସାର ଘଟୁଛି । ଲୋକ ଅଗମ୍ୟ ଗମନ କରିପାରିଲା, ଅଦେଖାକୁ ଦେଖିପାରିଲା, ଅଜଣାକୁ ଜାଣି ପାରିଲା ଓ ଅଚିହ୍ନାକୁ ସହଜରେ ଚିହ୍ନି ପାରିଲା । ସମସ୍ତ ସୁଖ ସମୃଦ୍ଧିକୁ ହାତ ପାଆନ୍ତାରେ ରଖିବାକୁ

ମଣିଷ ସତତ ଚେଷ୍ଟିତ । କିନ୍ତୁ ଏହା ଫଳରେ ପ୍ରକୃତି ଦତ୍ତ ପଦାର୍ଥ, ବୃକ୍ଷଲତା ପରିବେଷ୍ଟିତ ଜଙ୍ଗଲ, ଖଣିଜ ଦ୍ରବ୍ୟ, ମୃତ୍ତିକା, ଜଳ ଓ ବିଭିନ୍ନ ପ୍ରଜାତିର ଜୀବଜନ୍ତୁର କ୍ରମଶଃ ଅବକ୍ଷୟ ହେବାରେ ଲାଗିଛି । ପ୍ରାକୃତିକ ସମ୍ପଦଗୁଡ଼ିକର ପାରସ୍ପରିକ ସନ୍ତୁଳନଦ୍ୱାରା ଆମ ପରିବେଶ ସୁରକ୍ଷିତ ହୋଇଥାଏ । ଏହି ସବୁର ସନ୍ତୁଳନ ନ ରହିଲେ ଜୀବଜଗତ ପ୍ରତି ବିପଦ ସୃଷ୍ଟି ହୋଇଥାଏ । ଏଣୁ ଏହି ସବୁର ବ୍ୟବହାର ସୁରକ୍ଷା ଓ ପରିଚାଳନା ପ୍ରତି ସତର୍କତା ଅବଲମ୍ବନ ହିଁ ବିଜ୍ଞତାର ପରିଚୟ ।

ମାତ୍ରାଧିକ୍ୟ ଜନ ସଂଖ୍ୟା ବୃଦ୍ଧି, ଜଙ୍ଗଲ ସଂପଦର ଯଥେଚ୍ଛା ବ୍ୟବହାର, ସହରୀକରଣ, କଳକାରଖାନା ପ୍ରତିଷ୍ଠା, ନଦୀବନ୍ଧ ଯୋଜନା, ରାସ୍ତାଘାଟ ନିର୍ମାଣଦ୍ୱାରା ବହୁ ଜଙ୍ଗଲର କ୍ଷୟ ଘଟୁଛି । ବର୍ଦ୍ଧିଷ୍ଣୁ ଜନସଂଖ୍ୟାରେ ଖାଦ୍ୟ ବସ୍ତ୍ର ଆଦିର ସମସ୍ତ ଚାହିଦା ବୃଦ୍ଧି ପାଇବା ଯୋଗୁଁ ନୂତନ ଚାଷ ଜମି ପ୍ରସ୍ତୁତି ହେବା ଫଳରେ ଜଙ୍ଗଲ ସଂପଦର ଅବକ୍ଷୟ ଘଟିବାରେ ଲାଗିଛି । ଗୃହ ନିର୍ମାଣ ଓ କାଠ ନିର୍ମିତ ଖଟ, ପଲଙ୍କ, ଆଲମିରା, ଟେବୁଲ, ଚୌକି, କବାଟ, ଝରକା, ଆଦି ନିର୍ମାଣ ଯୋଗୁଁ ମଧ୍ୟ ବହୁ ପରିମାଣରେ ଜଙ୍ଗଲ ସଂପଦ ନଷ୍ଟ ହେଉଛି । ଏତଦ୍‌ବ୍ୟତୀତ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ପୋଡୁ ଚାଷ କରିବାଦ୍ୱାରା ମଧ୍ୟ ବହୁ ଜଙ୍ଗଲ ନଷ୍ଟ ହେବା ସଂଗେସଂଗେ ମୃତ୍ତିକା ମଧ୍ୟ ପ୍ରଦୂଷିତ ହେଉଛି । ଗ୍ରୀଷ୍ମଋତୁରେ କେତେକ ଅସାମାଜିକ ବ୍ୟକ୍ତିଙ୍କର ଦାୟିତ୍ୱ ହୀନତା ଯୋଗୁଁ ଜଙ୍ଗଲରେ ନିଆଁ ଲାଗି ବହୁ ଜଙ୍ଗଲ ସଂପଦ ନଷ୍ଟ ହେବା ସଂଗେସଂଗେ ସେହି ଇଲାକାରେ ଥିବା ବହୁ ଜୀବଜନ୍ତୁ, କୀଟପତଙ୍ଗ, ସରୀସୃପ ଆଦି ଅକାଳରେ ମୃତ୍ୟୁବରଣ କରିଥାନ୍ତି । ସେଥିଯୋଗୁଁ ବହୁ ପ୍ରଜାତିର ଔଷଧୀୟ ବୃକ୍ଷଲତା ଓ ପ୍ରାଣୀ ବିଲୁପ୍ତ ହେବାରେ ଲାଗିଛନ୍ତି । ଆହୁରି ମଧ୍ୟ ଜଙ୍ଗଲ ପୋଡ଼ି ହେବା ଫଳରେ ସେହି ସ୍ଥାନରେ ନୂତନ ଜଙ୍ଗଲ ସୃଷ୍ଟି ହେବାକୁ ବହୁ ବର୍ଷ ଲାଗିଯାଇଥାଏ ଏବଂ ସେହି ସ୍ଥାନର ମାଟି କଠିନ ଓ ରସହୀନ ହୋଇଯାଏ । ବଣ ଜଙ୍ଗଲ କ୍ଷୟ ହେବାର ଅନ୍ୟ ଏକ ପ୍ରମୁଖ କାରଣ ହେଲା ଗୃହପାଳିତ ଗାଇଗୋରୁ, ମଇଁଷି ଓ ଛେଳି । ଏମାନେ ଗଛପତ୍ର ନଷ୍ଟ କରିବା ସହ ଅଙ୍କୁରୋଦ୍‌ଗମକୁ ମାଡ଼ି ଦଳି ନଷ୍ଟ କରି ଦିଅନ୍ତି ।

ଜଙ୍ଗଲ କ୍ଷୟ ହେବାଦ୍ୱାରା ବର୍ଷା ଜଳ ସିଧାସଳଖ ମାଟି ଦେହରେ ପତିତ ହୋଇ ମୃତ୍ତିକା କ୍ଷୟ ନିମ୍ନମୁଖୀ ହୋଇ ନଦୀ ଗର୍ଭରେ ମିଶିଥାଏ । ଫଳରେ ମାଟିରେ ଉର୍ବରତା ନଷ୍ଟ ହେବା ସଂଗେସଂଗେ ବନ୍ୟା ବିପ୍ରାତର ଆଶଙ୍କା ବଢ଼ିଯାଏ । ପର୍ବତ ଦେହରେ ମୃତ୍ତିକା କ୍ଷୟ ହେଲେ ଗଛଗୁଡ଼ିକର ମୂଳ ଦୁର୍ବଳ ହୋଇ ବର୍ଷା ପବନ ଫଳରେ ଟଳି ପଡ଼ିଥାଏ ଏବଂ ଭୂସ୍ଖଳନ ହୋଇ ବହୁ ଜୀବଜନ୍ତୁଙ୍କର ମୃତ୍ୟୁର କାରଣ ହୋଇଥାଏ । ବୃଷ୍ଟିପାତ ହ୍ରାସ ପାଇ ମରୁଡ଼ି ଓ ଅନିୟମିତ ବୃଷ୍ଟିପାତ ମଧ୍ୟ ହୋଇଥାଏ । ଘନ ବୃକ୍ଷ ଆଚ୍ଛାଦିତ ଅଞ୍ଚଳରେ ଶୀତ, ଖରା ଓ ବର୍ଷାର ପ୍ରଭାବ ସମତୁଲ ଭାବରେ ପ୍ରଭାବିତ ହୋଇଥାଏ । କିନ୍ତୁ ଯେଉଁ ଅଞ୍ଚଳରେ ଜଙ୍ଗଲ ସଂପଦର ଅଭାବ ପରିଦୃଷ୍ଟ ହୁଏ ସେଠାରେ ଜଳବାୟୁର ଅନିୟମିତତା ଦେଖା ଦେଇଥାଏ ।

ବୃକ୍ଷଦ୍ୱାରା ବାୟୁ ଓ ଜଳର ନିୟନ୍ତ୍ରଣ ହେବା ସଂଗେସଂଗେ ଆମକୁ ଦେଇଥାଏ ଅମାପ ସୁଖ ଓ ସମୃଦ୍ଧି । ଏଣୁ ଅରଣ୍ୟ ସଂପଦର ସଂରକ୍ଷଣ ଓ ସୁରକ୍ଷା ଆମର ନୈତିକ ଓ ସାମାଜିକ ଦାୟିତ୍ୱ ।

ଆଜକୁ ୪୦/୫୦ ବର୍ଷ ତଳେ ଜଙ୍ଗଲ ସମ୍ପଦର ସୁରକ୍ଷା ଅଭିବୃଦ୍ଧି ନିମନ୍ତେ ଜନସଚେତନତା ନ ଥିଲା । କାରଣ ସେତେବେଳେ ଆମ ରାଜ୍ୟରେ ଅରଣ୍ୟ ଭରପୂର ରହିଥିଲା । ଆମ ରାଜ୍ୟର କ୍ଷେତ୍ରଫଳ ହେଉଛି ୧,୫୫,୭୦୭ ବର୍ଗ କିଲୋମିଟର । ଏହାର ୫୨,୪୭୨ ବର୍ଗ ଜଙ୍ଗଲ ଭରି ରହିଥିଲା । କିନ୍ତୁ ବସି ଖାଇଲେ ନଇବାଲି ସରିବା ପରି ଅବାଧରେ ଜଙ୍ଗଲ କଟା ଚାଲିଲା । ଏହାର ଭରଣପୂରଣ ପାଇଁ କେହି ଦୃଷ୍ଟି ଦେଲେ ନାହିଁ । କ୍ରମାଗତ ଭାବରେ କ୍ଷୟ ହୋଇ ଏବେ ଆମ ରାଜ୍ୟରେ ଜଙ୍ଗଲର ଆୟତନ ମାତ୍ର ଶତକଡ଼ା ୩୦ ଭାଗ । ସେଥିମଧ୍ୟରେ ଘଞ୍ଚ ଜଙ୍ଗଲ କେବଳ ମାତ୍ର ୨୭,୦୦୦ ବର୍ଗ କି.ମି. ଯାହାକି ଶତକଡ଼ା ୧୭ ଭାଗ ହେବ । ସେଥିପାଇଁ ଆମ ରାଜ୍ୟରେ ବହୁପ୍ରକାର ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଉଛି ଏବଂ ବାୟୁ ପ୍ରଦୂଷଣର ମାତ୍ରା ବଢ଼ି ଚାଲିଛି । ଜଙ୍ଗଲ ସଂପଦର ହ୍ରାସ ହେବା ଫଳରେ ବନ୍ୟ ଜନ୍ତୁମାନଙ୍କ ସଂଖ୍ୟା ହ୍ରାସ ପାଇ ଆସୁଅଛି । ଏଥିପାଇଁ ବହୁ ସଂଖ୍ୟକ ହାତୀ, ଚିତାବାଘ, କୁଟୁରା, ହରିଣ, ସରୀସୃପ ଆଦି ସ୍ଥଳଭାଗକୁ ଚାଲି ଆସିବାରୁ ସେମାନେ ଜନତାର ଅତ୍ୟାଚାରର ଶିକାର ହେଉଛନ୍ତି । ଏହି ଜଙ୍ଗଲ କ୍ଷୟ ଯୋଗୁଁ କେତେ ଯେ ପ୍ରଜାତିର ବୃକ୍ଷ ଓ ଜୀବଜନ୍ତୁ ଲୋପ ପାଇ ସାରିଲେଣି ସେ ସଂପର୍କରେ ପ୍ରଫେସର ବାବୁରାମ ସିଂହ, 'ଯୋଜନା' ପତ୍ରିକା ୨୦୧୦ ମାର୍ଚ୍ଚ ସଂଖ୍ୟାରେ 'ଜୈବ ବିବିଧତା' ପ୍ରବନ୍ଧରେ ଲେଖିଛନ୍ତି–

'ଦୁଃଖ ଓ ପରିତାପର ବିଷୟ ସ୍ରଷ୍ଟାଙ୍କ ସୃଷ୍ଟିର ସର୍ବଶ୍ରେଷ୍ଠ କୃତି ମଣିଷ ଆଜି ଜୈବ ବିବିଧତା ଧ୍ୱଂସର କାରଣ ସାଜିଛି ।

ବାସଗୃହ, ଗମନାଗମନ, କୃଷି, କଳକାରଖାନା, ଭିତ୍ତିଭୂମି ଆଦିର ଆବଶ୍ୟକତା ପୂରଣ ପାଇଁ ଜଙ୍ଗଲ ଓ ଅନ୍ୟାନ୍ୟ ଜୀବଜନ୍ତୁମାନଙ୍କ ବାସସ୍ଥଳୀଗୁଡ଼ିକର କ୍ରମାଗତ ଧ୍ୱଂସ, ଖାଦ୍ୟ ଓ ଔଷଧର ଆବଶ୍ୟକତା ପୂରଣ ପାଇଁ ବିଭିନ୍ନ ଉଦ୍ଭିଦ ଓ ଜୀବନର ଅତ୍ୟଧିକ ବ୍ୟବହାର, କୃଷିରେ ବ୍ୟବହୃତ ବିଭିନ୍ନ ରାସାୟନିକ ପଦାର୍ଥ ଓ ବିଷାକ୍ତ ଗ୍ୟାସ ଜନିତ ପ୍ରଦୂଷଣ ଆଦି କାର୍ଯ୍ୟ ଜୈବ ବିବିଧତା ଓ ଅବକ୍ଷୟର ପ୍ରମୁଖ କାରଣ ସାଜିଛି । ପରିସ୍ଥିତି ଏପରି ଯେ, ସଂପ୍ରତି ପ୍ରତ୍ୟେକ ଦିନ ଗୋଟିଏ ଜାତିର ଜୀବନ ଧରାପୃଷ୍ଠରୁ ଲୋପ ପାଇବାକୁ ଲାଗିଛି । ଏହି ବିଲୋପର ଗତି ଯଦି ଅବ୍ୟାହତ ରହେ ତେବେ ଆଉ କେତେବର୍ଷ ପରେ ପୃଥିବୀ ଏକ ଧ୍ୱଂସ ସ୍ତୂପରେ ପରିବର୍ତ୍ତନ ହେବ ଏଥିରେ ସନ୍ଦେହ ନାହିଁ ।'

ବାସ୍ତବରେ ଏହା ଅତ୍ୟନ୍ତ ଉଦ୍‌ବେଗର ବିଷୟ । ଏଥିପାଇଁ ଦାୟୀ କିଏ ? ଆମେ ହିଁ ଦାୟୀ । ଜଙ୍ଗଲ କମି କମି ଯିବା ଆମ ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ଅଶୁଭ ସୂଚନା । ସବୁ ଅରଣ୍ୟ ଭୂମି ସବୁ ସୁଖ, ଶାନ୍ତି, ଆଶା ଓ ଆଶ୍ୱାସନାର ପ୍ରତୀକ । କ'ଣ ନାହିଁ ଏଠାରେ ? ସେଥିପାଇଁ ପୂର୍ବ କାଳରେ ଋଷିମୁନିମାନେ ଆଶ୍ରମ କରି ଜନସମାଜକୁ ଦିଗ୍‌ଦର୍ଶନ ଦେଉଥିଲେ । ଜଙ୍ଗଲ ସମ୍ପଦର ଗୁରୁତ୍ୱ ଓ ମହତ୍ତ୍ୱକୁ ଉପଲବ୍ଧି କରି ବୃକ୍ଷରୋପଣ କରୁଥିଲେ । ବିଭିନ୍ନ ଜୀବଜନ୍ତୁ ପାଳନ କରି ତା'ର ସେବା ଯତ୍ନ ନେବାରେ ଉଦାହରଣ ସୃଷ୍ଟି କରୁଥିଲେ । ସ୍ୱଭାବ କବି ଗଙ୍ଗାଧର ମେହେର ତାଙ୍କର 'ପ୍ରଣୟ ବଲ୍ଲରୀ' କାବ୍ୟରେ କଣ୍ୱ ମହର୍ଷିଙ୍କ ପାଳିତା କନ୍ୟା ଶକୁନ୍ତଳା କିପରି ଆଶ୍ରମରେ ପରିପାଳିତ ବିଭିନ୍ନ ଜୀବଜନ୍ତୁ ଓ ଆଶ୍ରମସ୍ଥ ବୃକ୍ଷଲତାର ସେବା ଯତ୍ନ କରୁଥିଲା ତାର ମାର୍ମିକ ଚିତ୍ର ପ୍ରଦାନ କରି ଲେଖିଛନ୍ତି –

'ଶକୁନ୍ତଳା ପଥେ ଯାଉଁ ଯାଉଁ ତାର
ତରୁଲତା ଚାହିଁ ଚାହିଁ
ହୃଦୟ ପଟରେ ଚିତ୍ରି ନେଉଥାଏ
ସେନେହେ ରଙ୍ଗ ରଙ୍ଗାଇ ।
ଥରେ ଥରେ ସବୁ ତରୁଲତା ଅଙ୍ଗ
କରି ଦେଉଥାଏ ସ୍ପର୍ଶ
ବିକାଶ ବ୍ୟାଜରେ ତରୁ–ଲତାଙ୍କର
ହେଉଥାଏ ଲୋମହର୍ଷ ।'

ବର୍ତ୍ତମାନ ଯେଉଁ ହାରରେ ବାୟୁ ପ୍ରଦୂଷଣ ବଢ଼ି ଚାଲିଛି ଏଥିରୁ ରକ୍ଷା ପାଇବାର ଏକମାତ୍ର ପଥ ଓ ଭରସା ହେଉଛି ପର୍ଯ୍ୟାପ୍ତ ଜଙ୍ଗଲ ସଂପଦ । ବୃକ୍ଷ ଜୀବନ ରକ୍ଷାକାରୀ ବ୍ୟବସ୍ଥାରେ ଭାରସାମ୍ୟ ରକ୍ଷା କରିବା ପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ସବୁଜ ବନଲତା ପ୍ରାଣ ରକ୍ଷା ପାଇଁ ଆମର ଏକାନ୍ତ ସହାୟକ । ଏପରି ଉଦାର ସେବାର ତୁଳନା ବା କଳନା ନାହିଁ । ଆମେ ନିଃଶ୍ୱାସରେ ଛାଡୁଥିବା ଅଙ୍ଗାରକାମ୍ଳ, ଯାନବାହାନ, କଳକାରଖାନା ଆଦିରେ ବିଷାକ୍ତ ବାଷ୍ପକୁ ବୃକ୍ଷ ଶୋଷଣ କରି ଆମକୁ ଦିଏ ଅମ୍ଳଜାନ । ଯାହାଫଳରେ ମଣିଷ ଓ ପ୍ରକୃତି ମଧ୍ୟରେ ଭାରସାମ୍ୟ ରକ୍ଷା କରି ଯୁଗାବଧି ଚାଲିଛି । ଏକ ଏକର ବିଶିଷ୍ଟ ଜଙ୍ଗଲ ୩୧.୪୫ ଟନ୍ ଅଙ୍ଗାରକାମ୍ଳ ଶୋଷଣ କରିଥାଏ । ଅନ୍ୟାନ୍ୟ ପ୍ରଦୂଷକମାନଙ୍କୁ ମଧ୍ୟ ଛାଣି ଦେଇ ଏହା ବାୟୁକୁ ବିଶୁଦ୍ଧ କରିଥାଏ । ଆହୁରି ମଧ୍ୟ ବୃକ୍ଷ ସମ୍ପଦ ଭୂତଳ ଜଳର ସ୍ତର ବଢ଼ିବାରେ ସାହାଯ୍ୟ କରେ ।

ଆମର ସାମାଜିକ ଜୀବନରେ ଜଙ୍ଗଲଜାତ ଦ୍ରବ୍ୟର ଅର୍ଥନୈତିକ ବିକାଶ କ୍ଷେତ୍ରରେ ମଧ୍ୟ ବେଶ୍ ସହାୟକ ହୋଇଥାଏ । କେନ୍ଦୁପତ୍ର, ବାଉଁଶ, ଶାଳପତ୍ର ଓ ମଞ୍ଜି, ମହୁଲ, ଟୋଲ ଚାର, କେନ୍ଦୁ, ତେନ୍ତୁଳି, ଶିଆଳିପତ୍ର, ବିଡ୍ରୁନ୍ (ଝାଡୁପତ୍ର ଓ ଘାସ) ଆଦି ସଂଗ୍ରହ କରି ତାକୁ ବଜାରରେ ବିକ୍ରି କରି ଲୋକେ ବେଶ୍ ଦୁଇ ପଇସା ରୋଜଗାର କରିଥାଆନ୍ତି । ଏତଦ୍‌ବ୍ୟତୀତ ହରିଡ଼ା, ବାହାଡ଼ା, ଅଁଳା ରେଠାଫଳ, ଭୂଇଁ ନିମ୍ବ, ବଣ ତୁଳସୀ, କୋଚିଲା, ଗୁଞ୍ଜି, ନିମ୍ବମଞ୍ଜି, କୁସୁମ ମଞ୍ଜି, ଚାରମଞ୍ଜି, ପଣସ ମଞ୍ଜି, ଜଙ୍ଗଲ ବେଲ, କଇଁଥ, ପାଲୁଅ, ବଣହଳଦୀ, ବେଣାଚେର, ବାଘ ନଖୀ, ସୁନାରୀ ବକ୍କଳ, ବାବୁଲ ଅଠା, ଝୁଣା, ମହୁ, ଟସର ଖୋସା, ବିଭିନ୍ନ ପ୍ରକାର ଛତୁ, ଶିମିଳି ତୂଳା, ବେତ, ଶିଆଳି ତନ୍ତୁ, ସବାଇ ଘାସ, ମଶିଣା ଘାସ, ଝୁଣା, ମହୁ, ସୁନାରୀ ଫଳ, ଛାପାଡ଼ା ଫଳ, କରଞ୍ଜ ମଞ୍ଜି ଆଦି ବହୁ ଆୟକାରୀ ବଣ୍ୟଜାତ ଦ୍ରବ୍ୟ ଅଟେ ।

ଜଙ୍ଗଲ ମଧ୍ୟରେ ମିଳୁଥିବା, ମୂଲ୍ୟବାନ କାଠ ମଧ୍ୟରେ ଶାଳ, ପିଆଶାଳ, ଶିଶୁ, ଗମ୍ଭାରୀ, ଶିରିଶ, ଭେରୁଁ, କର୍ଲା, ବରଙ୍ଗା, ଶାଗୁଆନ, କୁସୁମ, କୁରୁମ, ଅସନ, ଚନ୍ଦନ, ବମ୍ବୁର, ଫାସୀ, ନିମ୍ବ ଆଦି ଅନ୍ୟତମ ।

କେନ୍ଦୁ ପତ୍ର ଆମ ଓଡ଼ିଶାର ଅନ୍ୟତମ ରାଜସ୍ୱ ଆଦାୟକାରୀ ସାମଗ୍ରୀ । ଏହି ପତ୍ରରୁ ବିଡ଼ି ତିଆରି ହୁଏ । ଏହି ପତ୍ରଗୁଡ଼ିକ କେନ୍ଦୁ ଗଛରୁ ସଂଗ୍ରହ କରାଯାଏ ନାହିଁ । ସେଗୁଡ଼ିକ କେନ୍ଦୁବୁଦାମାନଙ୍କରୁ ସଂଗ୍ରହ କରାଯାଇଥାଏ । ଏହି ବୁଦାଗୁଡ଼ିକ ସାଧାରଣତଃ ଅନୁର୍ବର ଉଚ୍ଚ ଆଁଟ କିମ୍ବା ଉଚ୍ଚ ରଗୁଡ଼ିଆ ସ୍ଥାନରେ ବୁଦୁବୁଦୁକିଆ ହୋଇ ବଢ଼ିଥାଏ । ଏହା ଗୁଚ୍ଛା ଆକାରରେ ଥାଏ । ଏହି ଗୁଚ୍ଛାକୁ ସାଧାରଣତଃ ଫେବୃଆରୀ ମାସ ପୂର୍ବରୁ କଟାଇ ଦିଆଯାଏ । ଏହାପରେ ପରେ ସେହି ପତ୍ରକୁ ଏପ୍ରିଲ ମାସରେ

ସଂଗ୍ରହ କରାଯାଏ । ଶାଳ କାଠ ଖୁବ୍ ମଜ୍‌ବୁଦ । ଏହି କାଠରୁ ବହୁ ଘର କରଣା ଜିନିଷ ହୋଇଥାଏ । କିଛି ବର୍ଷ ଆଗରୁ ଏହି ଗଛର ଗଣ୍ଡି ପକାଇ ତା' ଉପରେ ରେଳ ଧାରଣା ବିଛା ଯାଉଥିଲା । ଶାଳ ମଞ୍ଜିରୁ ଓଡ଼ିଶା ସରକାରଙ୍କୁ ବହୁ ଟଙ୍କାର ରାଜସ୍ୱ ମିଳେ । ୧୯୮୩ ମସିହାରୁ ଶାଳ ମଞ୍ଜି ଜାତୀୟକରଣ ହୋଇଅଛି । ସେହିପରି ଶିଶୁ, ଶାଗୁଆନ, ବିଜା, ଗମ୍ଭାରୀ ଆଦି ବହୁ ମୂଲ୍ୟବାନ କାଠ । ଏଥିରୁ ବହୁ ଘର କରଣା ଜିନିଷ ତିଆରି ହୋଇଥାଏ । ଏହି କାଠଗୁଡ଼ିକ ଖୁବ୍ ଶକ୍ତ ଓ ମଜ୍‌ବୁଦ । ସେହିପରି ବାଉଁଶ ଆମର ଦୈନନ୍ଦିନ ଜୀବନରେ ବହୁ କାମରେ ଆସିଥାଏ । ବାଉଁଶରୁ କାଗଜ ମଧ୍ୟ ତିଆରି ହୋଇଥାଏ । ବାଉଁଶ ଖୁବ୍ ଶୀଘ୍ର ବଢ଼େ । ଏହା ସାଧାରଣତଃ ଯେକୌଣସି ସ୍ଥାନରେ ହୋଇଥାଏ । କିନ୍ତୁ ଆର୍ଦ୍ରଭୂମିରେ ଭଲ ବଢ଼ିଥାଏ । ପୃଥିବୀରେ ୧୨୫୦ ପ୍ରକାର ବାଉଁଶ ଦେଖାଯାଏ । ଭାରତରେ ୧୪୦ ପ୍ରକାର ବାଉଁଶ ହୁଏ । ସେଥିମଧ୍ୟରୁ ଓଡ଼ିଶାରେ ୬ ପ୍ରକାର ବାଉଁଶ ହୁଏ । ଆମ ଓଡ଼ିଶାର ଶୁଷ୍କ ଅଞ୍ଚଳରେ ଶାଳିଆ ଓ ସୁନ୍ଦର କଣି ବାଉଁଶ ମିଳୁଥିବାବେଳେ ଆର୍ଦ୍ରଭୂମି ଅଞ୍ଚଳରେ ଡାବା ବାଉଁଶ ମିଳେ । ପଶ୍ଚିମ ଓଡ଼ିଶାରେ ସାଧାରଣତଃ କଟଙ୍ଗ, ବାଞ୍ଜି ଓ ବାଉଁଶ କହୁଥିବା ଏହି ତିନି ଜାତିର ବାଉଁଶ ଦୃଷ୍ଟିଗୋଚର ହୋଇଥାଏ ।

ଉପକୂଳବର୍ତ୍ତୀ ଅଞ୍ଚଳରେ ଝାଉଁ ଜଙ୍ଗଲ ବହୁଳ ଭାବେ ଦେଖାଯାଏ । ବିଶେଷତଃ ଏହି ଜଙ୍ଗଲ ବାତ୍ୟାକୁ ପ୍ରତିହତ କରିଥାଏ । ଝାଉଁ ଗଛ ଶୀଘ୍ର ବଢ଼ିଥାଏ । ଫଳରେ ଆମ ପାଇଁ ଏହା ଖୁବ୍ ଲାଭଦାୟକ ଅଟେ । ସାଧାରଣତଃ ଏହି ଗଛ ଜାଳେଣି ରୂପେ ବ୍ୟବହାର କରିଥାଆନ୍ତି । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଥିବା ବାଲିଆ ଜମିରେ ଏହି ଗଛ ସୁନ୍ଦର ଭାବରେ ବଢ଼ିଥାଏ । କରଞ୍ଜ ଓ ପୋଲାଙ୍ଗ ଗଛ ମଧ୍ୟ ଏହି ଅଞ୍ଚଳରେ ବିଶେଷ ଭାବେ ଦେଖାଯାଏ । ଆହୁରିମଧ୍ୟ ସମୁଦ୍ର ଉପକୂଳବର୍ତ୍ତୀ ସନ୍ତସନ୍ତିଆ ଅଞ୍ଚଳ ଓ ନଦୀ ମୁହାଣ ଅଞ୍ଚଳରେ ଜୁଆରିଆ ଅରଣ୍ୟ ବା ହେନ୍ତାଳ ବନ ଦେଖାଯାଏ । ଏଠାରେ ସମୁଦ୍ରର ଲୁଣାପାଣି ତଥା ଜୁଆର ମାଡ଼େ । ସେହି ପାଣି ପବନ ସହିତ ଖାପଖୁଆଇ ଚଳୁଥିବା ଉଦ୍ଭିଦ ଦୃଷ୍ଟିଗୋଚର ହୁଏ । ଏହି ଅଞ୍ଚଳରେ ରାଇ, ଗରଜା, କେରୁଆ, ଧଳାବାଣୀ, ଖୁଆଁ, ଖୁଦା, କଳାବାଣୀ, ସୁମାମ୍ଭାରା, ହେନ୍ତାଳ, ତେଲୁଣୀ ହରକଂଚ, କେରକେରା, କରିଆ ଆଦି ବୃକ୍ଷ ଏଠାରେ ଦେଖାଯାଏ । ଆମ ଓଡ଼ିଶାର କଟକ ଭିତରକନିକା ଅଞ୍ଚଳରେ ଏହି ପ୍ରକାର ଜଙ୍ଗଲ ଦେଖାଯାଏ । ଜଙ୍ଗଲ ବିଭାଗ ରିପୋର୍ଟ ଅନୁସାରେ ଏହାର ଆୟତନ ମାତ୍ର ୨୭୦ ବର୍ଗ କିଲୋମିଟର ହେବ। ଏହି ହେନ୍ତାଳ ବନ ଅଞ୍ଚଳରେ ବହୁ ପ୍ରକାର ବନ୍ୟପ୍ରାଣୀ ବାସ କରନ୍ତି । ଏମାନଙ୍କର ଖାଦ୍ୟ ଓ ପାଣି ସହଜରେ ଏଠାରେ ମିଳି ଯାଇଥାଏ । କୁମ୍ଭୀର, ଅଲିଭ ରିଡ଼ଲେ ଓ ନାନାପ୍ରକାର ସରୀସୃପ ଏଠାରେ ବିପୁଳ ସଂଖ୍ୟାରେ ଦେଖାଯାଆନ୍ତି । ଏବେ ଏହି ଭିତରେ କନିକାକୁ ଦେଶ ବିଦେଶରୁ ବହୁ ସଂଖ୍ୟକ ପର୍ଯ୍ୟଟକ ଆସୁଛନ୍ତି ।

ଆମ ଓଡ଼ିଶାର ଜଙ୍ଗଲଗୁଡ଼ିକ ବିବିଧତାରେ ପରିପୂର୍ଣ୍ଣ । ଜାଳେଣୀ କାଠ, ମୂଲ୍ୟବାନ କାଠ, ଔଷଧୀୟ ବୃକ୍ଷ ସହ ଲଘୁବନ ଜାତ ଦ୍ରବ୍ୟରେ ଭରପୂର । ଏହା ଆମର ଅର୍ଥନୈତିକ ଜୀବନକୁ ମଧ୍ୟ ବେଶ୍ ସମୃଦ୍ଧ ଓ ରୁଦ୍ଧିମନ୍ତ କରୁଅଛି । କିନ୍ତୁ ପରିତାପର ବିଷୟ ଏହି ପ୍ରାକୃତିକ ସଂପଦକୁ ଅବିଚାର ଭାବରେ ଲୁଟି ଲୁଟି ନିଃଶେଷ କରିବାକୁ ବସିଲେଣି । ଫଳରେ ଏହାର ପରିଣତି କି ଭୟଙ୍କର ଆଡ଼େ ଗତି କରୁଛି ଏବେ ଅଳ୍ପେ ବହୁତେ ସମସ୍ତେ ଅନୁଭବ କରି ଆସିଲେଣି । ଏହା ଏକ ଜାତୀୟ ସମ୍ପତ୍ତି । ଏହାର ସୁରକ୍ଷା ଓ ସଂରକ୍ଷଣ ଆମର ନୈତିକ କର୍ତ୍ତବ୍ୟ ।

ଜଙ୍ଗଲ ସଂପଦର ଦ୍ରୁତ ଅବକ୍ଷୟ ହେବା ଫଳରେ ରାଜ୍ୟ ସରକାର ୧୯୯୨ ମସିହାରେ କଞ୍ଚା ବା ଠିଆ ହୋଇଥିବା ଗଛ କାଟିବା ନିଷିଦ୍ଧ ଘୋଷଣା କରାଯାଇଛି । ହେଲେ ବି କାଠ ମାପିଆ ଓ ଅସାଧୁ ପ୍ରକୃତିର ଲୋକ ଜଙ୍ଗଲକୁ କାଟି ଲୁଟି ନେଇ ଯାଉଛନ୍ତି । ଏହାଫଳରେ ବହୁ ଜଙ୍ଗଲ ପଦା ହେବାକୁ ବସିଲାଣି । ସରକାରଙ୍କ ବନ ବିଭାଗ ସ୍ୱଳ୍ପ ସଂଖ୍ୟକ କର୍ମଚାରୀଙ୍କୁ ନେଇ ଅସହାୟ ବୋଧ କରୁଛନ୍ତି । ଜଣେ ଜଣେ ବନରକ୍ଷୀ ହେପାଜତରେ ରହିଅଛି ୧୭/୧୮ ବର୍ଗ କି.ମି. । ଏତେ ବିରାଟ ଅଞ୍ଚଳକୁ ସେ କ'ଣ ଦେଖାରଖା କରିବା ସମ୍ଭବ ? ଏଥିପାଇଁ ଜନ ସହଯୋଗର ଆବଶ୍ୟକତା ରହିଅଛି । ଜନ ସହଯୋଗ ବିନା ଯେତେ କର୍ମଚାରୀ ବଢ଼ାଇଲେ ମଧ୍ୟ ଜଙ୍ଗଲର ସୁରକ୍ଷା ରୋକାଯାଇ ପାରିବ ନାହିଁ । ଏହିଭଳି ଅମୂଲ୍ୟ ଓ ଅତ୍ୟାବଶ୍ୟକ ସମ୍ପତ୍ତିର ରକ୍ଷା କରିବା ଯେ ଆମର ନୈତିକ କର୍ତ୍ତବ୍ୟ ଏ କଥା ଆମେ ସମସ୍ତେ ହୃଦୟଙ୍ଗମ କରିବା ଆବଶ୍ୟକ । ଆମ ରାଜ୍ୟ ଓଡ଼ିଶାରେ ଜଙ୍ଗଲର ସୁରକ୍ଷା ଓ ପୁନର୍ବିନ୍ୟାସ ପାଇଁ ୧୯୫୦ ମସିହାରୁ ଉଦ୍ୟମ ଆରମ୍ଭ ହୋଇଛି । କିନ୍ତୁ ଗତ ବିଂଶ ଶତାବ୍ଦୀର ସତୁରୀ ଓ ଅଶୀ ଦଶକରୁ ଜଙ୍ଗଲ ସନ୍ନିକଟ ଗ୍ରାମବାସୀମାନେ ସ୍ୱଉଦ୍ୟମରେ ଓ କିଛି ସ୍ୱେଚ୍ଛାସେବୀ ଅନୁଷ୍ଠାନଙ୍କ ପ୍ରେରଣା ଓ ସହାୟତାରେ ଜଙ୍ଗଲର ସୁରକ୍ଷା କାର୍ଯ୍ୟ ଆରମ୍ଭ କରିଥିଲେ । ବଣ୍ୟ ସଂପଦର ଉତ୍ତମ ପରିଚାଳନା ଓ ରକ୍ଷଣାବେକ୍ଷଣ ପାଇଁ ଆମ ସରକାର ବିଧିବଦ୍ଧ ଭାବରେ ବିଭିନ୍ନ

ନିୟମ ଓ ଆଇନକାନୁନ୍ ପ୍ରସ୍ତୁତି କରିଛନ୍ତି । ଏବେ ପ୍ରାୟ ୧୧ ହଜାର ବନ ସଂରକ୍ଷଣ ସମିତି ଓ ବହୁ ଗ୍ରାମ୍ୟ ବନ ସୁରକ୍ଷା ସମିତି ଗଠନ କରାଯାଇ ବନ ସଂପଦକୁ ରକ୍ଷା କରିବା ପାଇଁ ପ୍ରୟାସ ଅବ୍ୟାହତ ରହିଛି ।

ବନୀକରଣ – ଅବ୍ୟବହୃତ ଜମିରେ ବୃକ୍ଷରୋପଣ ଓ ନୂତନ ଜଙ୍ଗଲ ସୃଷ୍ଟି କରିବା ହେଉଛି ବନୀକରଣ । ଏହି ବନୀକରଣ ଯୋଜନା ଫଳରେ ଜନସାଧାରଣ ଉପକୃତ ହେବା ସଂଗେସଂଗେ ପରିବେଶର ମଧ୍ୟ ସନ୍ତୁଳନ ରକ୍ଷା କରାଯାଇପାରିବ । ପ୍ରତିବର୍ଷ ଯେଉଁ ପରିମାଣର ଜଙ୍ଗଲ ନଷ୍ଟ ହେଉଛି, ଅନ୍ତତଃପକ୍ଷେ ସେତିକି ବା ତା'ଠାରୁ ଅଧିକ ଜମିରେ ବୃକ୍ଷରୋପଣ କଲେ ଯାଇ ସମଗ୍ର ଜୀବଜଗତ ପାଇଁ ମଙ୍ଗଳମୟ ହେବ । ଏଥିପାଇଁ ସରକାର ଯତ୍‌ପରୋନାସ୍ତି ପ୍ରୟାସ ଜାରି ରଖିଛନ୍ତି । ଏତଦ୍‌ବ୍ୟତୀତ ସୁଇଡ଼େନ ଓ ଅନ୍ୟାନ୍ୟ କେତେକ ଦେଶର ସହାୟତାରେ କିଛି ବର୍ଷ ହେଲା ସାମାଜିକ ବନୀକରଣ ଯୋଜନା କାର୍ଯ୍ୟକାରୀ ହେଉଛି । ବହୁ ବ୍ୟକ୍ତି ଓ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମଧ୍ୟ ଏ ଦିଗରେ ଚେଷ୍ଟା ଚଳାଇଛନ୍ତି । ଏହାଫଳରେ ଲୋକଙ୍କ ଜାଳେଣୀ କାଠ, ଗୃହ ନିର୍ମାଣ କାଠ ପାଇବା ସଂଗେସଂଗେ ଦେଶୀ ଫଳଗଛ ରୋପଣଦ୍ୱାରା ଜନସାଧାରଣ ମଧ୍ୟ ଲାଭବାନ ହୋଇପାରିବ । ନଈପଠା, ନଈକୂଳ, ରାସ୍ତାକଡ଼, କେନାଲହିଡ଼ି, ପୋଖରୀ ହିଡ଼, ଶ୍ମଶାନଭୂମି, ଅନାବାଦି ଗୋଚର ଆଦି ଜମିରେ ବନୀକରଣ କରାଯାଇପାରିବ । ଏଥିପାଇଁ ଲୋକଙ୍କର ଆନ୍ତରିକତା, ନିଷ୍ଠା ଓ ସହଯୋଗର ବିଶେଷ ଭାବରେ ଆବଶ୍ୟକତା ରହିଅଛି । ଏହି ସବୁସ୍ଥାନମାନଙ୍କରେ ବନୀକରଣଦ୍ୱାରା ବିଶେଷ ରୂପେ ନୂତନ ଜଙ୍ଗଲର ସୃଜନ ହେବା ସହିତ ମୃତ୍ତିକାକ୍ଷୟ ମଧ୍ୟ ରୋକାଯାଇ ପାରିବ । ଉଜୁଡ଼ା ଜଙ୍ଗଲକୁ ସଜାଡ଼ିବାକୁ ହେଲେ ଦେଶର ପ୍ରତ୍ୟେକ ବ୍ୟକ୍ତିଙ୍କୁ ସଚେତନ ହେବାକୁ ପଡ଼ିବ । ଜଙ୍ଗଲକୁ କାଠ ମାଫିଆ, ନିଆଁ, ଗୃହପାଳିତ ପଶୁ ଓ ପୋଡୁ ଚାଷକୁ ଆମକୁ ବାରଣ ଓ ପ୍ରତିହତ କରିବାକୁ ହେବ । ଏହା ସହିତ ଆମକୁ କାଠ ନିର୍ମିତ ଗୃହ ସାମଗ୍ରୀ ମଧ୍ୟ ନିହାତି କମାଇବାକୁ ହେବ ଯାହା ଫଳରେ ଜଙ୍ଗଲ ସଂପଦର ଅଭିବୃଦ୍ଧି ଘଟିବ ଏବଂ ଆମେ ଧରାପୃଷ୍ଠରେ ଶାନ୍ତିରେ ବାସ କରିପାରିବା ଏବଂ ଆମର କୃଷି, ଶିଳ୍ପ ଓ ଆର୍ଥିକ ଉନ୍ନତିରେ ବିଶେଷ ସହାୟକ ହେବ ।

ଦାନୀପାଲି, ବୁଢ଼ାରଜା
ସମ୍ବଲପୁର – ୭୬୮୦୦୪

# ସିଦ୍ଧି

କୁନଲତା ତ୍ରିପାଠୀ

ତୁମେ ଜ୍ଞାନ ମୋ ତୁମେ ଗାରିମା
ତୁମେ ଧ୍ୟାନ ମୋ ତୁମେ ଧାରଣା
ତୁମେ ସ୍ୱପ୍ନ ମୋ ତୁମେ ସାଧନା
ତୁମେ ଅମୃତମୟ ରଚନା ।

ଆଖି ବୁଜିଦେଲେ ତୁମେ ଅନ୍ତରେ
ଆଖି ଖୋଲିଦେଲେ ପ୍ରତି ପ୍ରକାଶରେ
ତୁମେ ସ୍ୱପ୍ନରେ ତୁମେ ବାସ୍ତବରେ
ତୁମେ ମୋ ଚିନ୍ତା ଆଉ ଚେତନାରେ ।

ତୁମେ ଅନନ୍ତ ଅସୀମ କଳ୍ପନା
ତୁମେ ମହତ୍ତର ଏକ ଭାବନା
ତୁମେ ଦିବ୍ୟ ଶାଶ୍ୱତ ଚେତନା
ତୁମେ ସୃଷ୍ଟି, ତୁମେହିଁ ସମ୍ଭାବନା ।

ତୁମେ ମଧୁମୟ ଏକ ମୂର୍ଚ୍ଛନା
ତୁମେ ସୁଧାଝରା ଏକ ସାନ୍ତ୍ୱନା
ତୁମେ ପୂର୍ଣ୍ଣ ମୋ ପୁଣ୍ୟ କାମନା
ତୁମେ ଇଷ୍ଟ ତୁମେ ହିଁ ଉପାସନା ।

ତୁମେ ଭରସା ଆଶା ସକଳର
ତୁମେ ଊର୍ଦ୍ଧ୍ୱରେ ମାୟା ମମତାର
ତୁମେ ହୃଦୟର ତୁମେ ଆତ୍ମାର
ତୁମେ ହିଁ ସିଦ୍ଧି ଦିବ୍ୟ ସାଧନାର ।

ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ
କଟକ

# ଶ୍ରୀମନ୍ଦିରରେ ଜନ୍ମାଷ୍ଟମୀ

ମିନତୀ ଷଡ଼ଙ୍ଗୀ

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଲୀଳାର ରହସ୍ୟ ଅବର୍ଣ୍ଣନୀୟ ଯିଏ ଯେଉଁ ପ୍ରକାର ଭାବରେ ବୁଝିଲେ ବା ବୁଝାଇଲେ ତାହା ସ୍ପଷ୍ଟ ହୋଇପାରେ ନାହିଁ । ପରଂବ୍ରହ୍ମଙ୍କର ସେହି ରହସ୍ୟମୟ ଲୀଳାମାଧୁରୀ ଭକ୍ତ ପ୍ରାଣକୁ ଅଭିଭୂତ କରିଥାଏ । ପୁଲକିତ ହୁଏ ମନ ଏ ଲୀଳା ଦର୍ଶନରେ। ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଯେତେ ମାନବୀୟ ଲୀଳା ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇଥାଏ, ତନ୍ମଧ୍ୟରୁ ଜନ୍ମାଷ୍ଟମୀ ପାଳନ ଏକ ସ୍ୱତନ୍ତ୍ର ପର୍ବ। ଯେଉଁ ଉତ୍ସବରେ ମହାପ୍ରଭୁ ସ୍ୱୟଂ ମାତା ଦେବକୀ ଭାବରେ ପୂଜିତ ହୋଇ ପୁଣି ନିଜକୁ ପୁତ୍ର କୃଷ୍ଣ ରୂପରେ ଜନ୍ମ ଦେଇଥାନ୍ତି ।

ସୁତ ତୁମ୍ଭେ ମାତା ତୁମ୍ଭେ ଆହେ ଜଗଦ୍ଧାତା
ବିଚିତ୍ର ଏ ଲୀଳା ତବ ହେ ଜଗତ କର୍ତ୍ତା

ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ଦୈନନ୍ଦିନ ପୂଜାନୀତି ବ୍ୟତିରେକ ଜନ୍ମାଷ୍ଟମୀ ପର୍ବ ପାଳନ ଅବସରରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇଥାଏ। ବିଧି ବିଧାନର ସହ ସ୍ୱତନ୍ତ୍ର ପୂଜା କାର୍ଯ୍ୟ ମଧ୍ୟ କରାଯାଏ ।

ଭାଦ୍ରବ ମାସ କୃଷ୍ଣପକ୍ଷ ସପ୍ତମୀ ତିଥିରେ ସାୟଂ କାଳ ପୂଜା ପରେ ଦେବକୀଙ୍କୁ ଗର୍ଭାବସ୍ଥାର ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ ଶ୍ରୀଜଗନ୍ନାଥଙ୍କୁ ପୁଣି ଥରେ ପୂଜା କରାଯାଏ । ନାନାବିଧ ବ୍ୟଞ୍ଜନ ଏବଂ ନାନା ପ୍ରକାର ପିଠା ସହ ଧୂଆପଖାଳ ନୈବେଦ୍ୟ ଅର୍ପଣ କରାହୁଏ। ତାହାପରେ ଅଷ୍ଟମୀ ଦିନ ସଂଧ୍ୟା ସମୟରେ ଆଚାର୍ଯ୍ୟ ସ୍ନାନ ସାରି ମନ୍ଦିରରେ ପ୍ରବେଶ କରିଥାନ୍ତି । ବୈଷ୍ଣବାଚମନ କରିବା ପରେ ଅଣସର ଗୃହର ଅଗ୍ରଭାଗରେ ବସ୍ତ୍ର ବେଷ୍ଟନ କରି ଏନ୍ତୁଡ଼ିଶାଳା ନିର୍ମାଣ କରାଯାଏ । ପଟ୍ଟବସ୍ତ୍ର ଓ ଝୀନବସ୍ତ୍ର ଦ୍ୱାରା ଏହାର ସବୁଦିଗ ଅଳଂକୃତ କରି ସେଥିରେ ରକ୍ଷାକବଚ ରଖି ଚନ୍ଦନ ଛିଟା ଦିଆଯାଏ । ସେହି ଶୋଭନୀୟ ଏନ୍ତୁଡିଶାଳରେ ଆଚାର୍ଯ୍ୟ ପଦ୍ମଫୁଲ, ସୋରିଷ ଏବଂ ଅଗ୍ନି ରଖିଥାନ୍ତି । ଏନ୍ତୁଡ଼ିଶାଳାରେ ଦୁଇଟି ଦ୍ୱାର ଥାଏ । ସେହି ଦ୍ୱାରରେ ଦ୍ୱାରପାଳମାନେ ମୁଷଳ ଧାରଣ କରି ଦଣ୍ଡାୟମାନ ହୋଇଥାନ୍ତି । ଏହି ଶାଳାର ଗୋଟିଏ କୋଠିରେ କାଷ୍ଠ ନିର୍ମିତ ଷଷ୍ଠୀ ଦେବୀଙ୍କ ପ୍ରତିମା ସ୍ଥାପନ କରାଯାଏ । ସେଠାରେ ଦୁଇଟି ଶୃଙ୍ଖଳ ସ୍ଥାପନ କରାଯାଇଥାଏ। ନାନା ପ୍ରକାର ଭୂଷଣରେ ଏହି ସୂତିକା ଗୃହକୁ ଭୂଷିତ କରାହୁଏ । ଆଚାର୍ଯ୍ୟ ସେଠାରେ ସତେଇଶ ଆଙ୍ଗୁଳ ବିଶିଷ୍ଟ ଗୋଟିଏ ଚାରିକୋଣିଆ ମଣ୍ଡଳ ପକାଇ ସୂତାଦ୍ୱାରା ତାକୁ ଚାରିକୋଣ ସୃଷ୍ଟି କରାନ୍ତି। ସେଥିରେ ୨୬୫ଟି କୋଠି କରନ୍ତି । ସେଥିରୁ ୩୬ଟି କୋଠିରେ ପଦ୍ମମଣ୍ଡଳ କରି ତା' ମଧ୍ୟରେ ପ୍ରଥମେ କର୍ଣ୍ଣିକା, ଦ୍ୱିତୀୟରେ କେଶର, ତୃତୀୟରେ ପତ୍ର ଓ ଚତୁର୍ଥରେ ପାଖୁଡ଼ାର ଅଗ୍ରଭାଗ କରନ୍ତି । ତା' ବାହାରେ ଗୋଲାକାର ରେଖା ଅଙ୍କନ କରନ୍ତି ।

ତା'ପରେ ଗୋଟିଏ ପଂକ୍ତିରେ ପୀଠ ରଚନା କରି ଦୁଇଟି ପଂକ୍ତିରେ ଗର୍ତ୍ତ କରିବା ପରେ ପୁଣି ଦୁଇଟି ପଂକ୍ତିରେ ଶୋଭନୀୟ ଦ୍ୱାର କରିଥାନ୍ତି । ଅର୍ଦ୍ଧ ଅଙ୍ଗୁଳ ପ୍ରମାଣରେ ଛଅଟି କୋଣ କରି ସେଥିରେ ରେଖା ଦ୍ୱାରା ସତ୍ତ୍ୱ, ରଜ, ତମ କ୍ରମାନୁସାରେ ଅଙ୍କାଯାଏ । ତା'ର ବାହାରକୁ ପୂର୍ବରେ ସୁନ୍ଦର ଦ୍ୱାରଟିଏ କରି ତାହା ପଛକୁ ଚକ୍ର ଓ ପତାକା ସଂଯୁକ୍ତ କରାଯାଇ ସୁବର୍ଣ୍ଣ କଳସଟିଏ ସ୍ଥାପନ କରାଯାଏ, ଯାହାକୁ ଦେଖିଲେ ମନରେ ବିସ୍ମୟ ସୃଷ୍ଟି ହୁଏ ।

ମଣ୍ଡଳର ଉତ୍ତର ଓ ଦକ୍ଷିଣରେ ପଞ୍ଚବର୍ଣ୍ଣ ମୁରୁଜରେ 'ଛଅ' କୋଣ ବିଶିଷ୍ଟ ଗୋଟିଏ ପଦ୍ମମଣ୍ଡଳ କରାଯାଏ । ଏହି ମଣ୍ଡଳର ଚାରିକୋଣ ଧଳା ମୁରୁଜରେ ଶୋଭାବନ କରାହୁଏ । ପଦ୍ମର ଧାର ହଳଦିଆ ମୁରୁଜରେ ଓ ତା'ର ପ୍ରତ୍ୟେକ ପତ୍ରରେ ଦୁଇଟି ଲାଲରେଖା କରାଯାଇଥାଏ । ପଦ୍ମକେଶର ହଳଦିଆ ମୁରୁଜରେ

କରି ତାହା ମଧ୍ୟରେ ଗୋଟିଏ ହଳଦୀ ବର୍ଣ୍ଣର ବିନ୍ଦୁ ଓ ସେହି ବିନ୍ଦୁ ମଧ୍ୟରେ ଲାଲମୁରୁଜର ବିନ୍ଦୁଟିଏ କରାହୁଏ । ଅଷ୍ଟଦିଗରେ ଆଠଟି ପତ୍ର ଧଳା ମୁରୁଜରେ କରି ତାକୁ ଲାଲରେଖାରେ ଚିହ୍ନିତ କରାଯାଏ । ପତ୍ର ମଧ୍ୟରେ ଅର୍ଦ୍ଧ ଚନ୍ଦ୍ରାକାର ରେଖା ଅଙ୍କନ କରାଯାଇ ତାହାର ଅଗ୍ରଭାଗ ରକ୍ତ ବର୍ଣ୍ଣ ଓ ସନ୍ଧିଗୁଡିକ ଶ୍ୟାମଳବର୍ଣ୍ଣ କରାଯାଏ ।

ଗୋଲାକାର ମଣ୍ଡଳ ବାହାରେ ଧଳା ମୁରୁଜରେ ଚାରୋଟି ଶୁକ୍ଳରେଖା ଆଙ୍କି ତାହାର ଦୁଇ ମଧ୍ୟଦେଶରେ କଳାମୁରଜ ପକାଯାଏ । ତା'ର ବାହାରେ ୨୮ ପଦ ବିଶିଷ୍ଟ ଗୋଟିଏ ପୀଠ ରଚନା କରି ସେହି ପୀଠରେ ତିନୋଟି ପାଦ ବିଶିଷ୍ଟ କୋଣରେ ଲାଲ ମୁରୁଜରେ ତିନୋଟି ପାଦ ଲେଖାଯାଏ । ତା'ପରେ ଚାରି ଚାରି ପାଦରେ ଗୋଟିଏ ଗୋଟିଏ ପୀଠ ରଚନା କରି ତାହାକୁ ଧଳା ମୁରୁଜରେ ଚିତ୍ରିତ କରାଯାଏ। ତା' ବାହାରେ ୮୧ ପାଦ ବିଶିଷ୍ଟ ଚତୁର୍ଦ୍ଦିଗରେ ବିଥି (ଖୋଲାସ୍ଥାନ) କରି ତାହାକୁ ଧଳା ମୁରୁଜରେ ମନୋରମ କରାହୁଏ । ସେହି ବୀଥିରେ ନାନା ବର୍ଣ୍ଣର ବିଚିତ୍ର ଫଳ ପୁଷ୍ପ ଯୁକ୍ତ ଲତା ରଖି ତା' ବାହାରେ ଛଅ ପାଦ ମଧ୍ୟ ଭାଗରେ ଧଳା ମୁରୁଜରେ 'ଦ୍ୱାର' ରଚନା କରାଯାଏ । ଦ୍ୱାରର ଉଭୟ ପାର୍ଶ୍ୱରେ ଚାରି ଚାରି ପାଦରେ ରକ୍ତବର୍ଣ୍ଣର ମୁରୁଜ ପକାଇ ଶୋଭାବନ କରାହୁଏ । ତାହାର ଉଭୟ ପାର୍ଶ୍ୱରେ ଚାରି ଚାରି ପାଦରେ ପୁଣି ହଳଦୀ ବର୍ଣ୍ଣର ମନୋରମ ଆନୁଷଙ୍ଗିକ ଶୋଭା ବର୍ଦ୍ଧନ କରାଯାଏ ।

ଚାରି ଦିଗରେ ଏହିଭଳି ରଚନା କରି ତା'ର ଚାରିକୋଣରେ ଛଅ ଛଅ ପାଦରେ କୃଷ୍ଣବର୍ଣ୍ଣର ମୁରୁଜ ପକାଇ ମନୋରମ କରାଯାଏ । ଏହାକୁ ସକଳ ସିଦ୍ଧିପ୍ରଦ 'ସର୍ବତୋ–ଭଦ୍ରମଣ୍ଡଳ' କୁହାଯାଏ । ଏଥିରେ ସକଳ ମଙ୍ଗଳ ସଙ୍କେତ ରହିଥାଏ ଓ ସମସ୍ତ ଐଶ୍ୱର୍ଯ୍ୟ ପୂର୍ଣ୍ଣ ହୋଇଥାଏ । ଏହି ମଣ୍ଡଳରେ କୃଷ୍ଣ ଜନ୍ମ ନିମିତ୍ତ ପୂଜା କଲେ ଭଗବାନ ଶ୍ରୀକୃଷ୍ଣ ପ୍ରୀତ ହୁଅନ୍ତି । ଏହି ମଣ୍ଡଳରେ ପୂଜାର ଫଳ କୋଟିଗୁଣ ହୋଇଥାଏ। ଏହି ମଣ୍ଡଳ ବିନା ପୂଜା ନିଷ୍ଫଳ ହୁଏ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ବ୍ରହ୍ମାଙ୍କର ଏହା ମୁଖ ନିଃସୃତ ନିର୍ଦ୍ଦେଶ ।

ମଣ୍ଡଳ ରଚନା ପରେ ବଳଭଦ୍ର ଓ ଜଗନ୍ନାଥଙ୍କୁ ନାନା ଅଳଙ୍କାରରେ ମଣ୍ଡିତ କରି ମନୋରମ ରୂପଶ୍ରୀରେ ସଜ୍ଜିତ କରାଯାଏ । ସନ୍ଧ୍ୟାକାଳୀନ ପୂଜା ସାରିବା ପରେ ପୂଜକ ଜନ୍ମ ପୂଜା ଆରମ୍ଭରେ ପ୍ରଥମେ ବରୁଣ ପୂଜା କରିଥାନ୍ତି। ତା'ପରେ କର୍ତ୍ତା ଭାବରେ ଅଗ୍ନିଶର୍ମା ଧୀରସ୍ଥିର ଭାବରେ ସଂକଳ୍ପ କରି କହନ୍ତି, ଧନ, ଧାନ୍ୟ, ସୁପୁତ୍ର, ପୌତ୍ର, ଯଶ, ଆୟୁ, ଐଶ୍ୱର୍ଯ୍ୟ, ସିଦ୍ଧି, ଶତ୍ରୁନାଶ, ସର୍ବତ୍ର ଜୟ, ସାମ୍ରାଜ୍ୟାଧିକାର ଆଦି ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରାପ୍ତି ନିମନ୍ତେ ଆଦର ଓ ଭକ୍ତି ସହକାରେ ବର୍ତ୍ତମାନ ମୁଁ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଜନ୍ମ ପୂଜା ବିପ୍ର ଦ୍ୱାରା କରିବି ।

ସଂକଳ୍ପ ପରେ ସେ ବସ୍ତ୍ର ଓ ଉତ୍ତରୀୟ, ଉପବୀତ, ସୁବର୍ଣ୍ଣକୁଣ୍ଡଳ ହଳେ, ମୁଦ୍ରିକା, ଚନ୍ଦ୍ର ଓ ପୁଷ୍ପ ଆନନ୍ଦରେ ଧରି 'ଶ୍ରୀକୃଷ୍ଣଙ୍କର ଜନ୍ମ ପୂଜା କରିବା ପାଇଁ ମୁଁ ଆପଣଙ୍କୁ ବରଣ କରୁଛି।'– ଏହା ଉଚ୍ଚାରଣ କରି ଆଚାର୍ଯ୍ୟଙ୍କୁ ବରଣ କରନ୍ତି। ତାହା ପରେ 'କୃତ ଅକୃତର ଦେଖାଶୁଣା କରିବା ନିମନ୍ତେ ମୁଁ ଆପଣଙ୍କୁ ବ୍ରହ୍ମା ଭାବରେ ବରଣ କରୁଛି।' ଏହା କହି ଭକ୍ତି ଓ ଶ୍ରଦ୍ଧାର ସହିତ ବ୍ରହ୍ମା ବରଣ କରନ୍ତି ।

ସେହି ପୀଠରେ ଅଷ୍ଟଦଳ ପଦ୍ମ ଅତି ଶୋଭନୀୟ କରି ଯନ୍ତ୍ରର ସହ ଅଙ୍କନ କରାଯାଏ । ତାହାର କୋଣର ମଧ୍ୟଭାଗରେ ପଲଙ୍କ ରଚିତ ହୁଏ । ସେଥିରେ ଶେଯ ଓ ତକିଆର ଚିତ୍ର ଅଙ୍କାଯାଏ । ସେହି ଦିବ୍ୟ ପଲଙ୍କରେ ଅର୍ଦ୍ଧସୁପ୍ତା ଦେବୀଙ୍କ ଚିତ୍ର ପ୍ରତିମା ଅଙ୍କନ କରାଯାଏ । ସେହି ଚିତ୍ରରେ ଦେବକୀଙ୍କ ବାମହସ୍ତ ଉପରେ ମସ୍ତକ ରହିଥାଏ । ଦକ୍ଷିଣ ହସ୍ତ ଦକ୍ଷିଣ ଜାନୁ ଉପରେ ରହିଥାଏ । ଉନ୍ମୀଳିତ ନେତ୍ରରେ ସକଳ ଆଭୂଷଣରେ ବିମଣ୍ଡିତା ହୋଇ ଚିତ୍ରିତ ବସ୍ତ୍ର ପରିଧାନ କରିଥାନ୍ତି ଦେବକୀ । ତାଙ୍କ କୋଳରେ ବାଳକୃଷ୍ଣ ଭାଗବାନ ମନୋହର ରୂପରେ ଶୋଭା ପାଉଥାନ୍ତି । ଚାରୁ ବେଣୀଧର କୃଷ୍ଣ ସର୍ବାଭରଣ ଭୂଷିତ ହୋଇଥାନ୍ତି । ଅତସୀ କୁସୁମ ସଦୃଶ ତାଙ୍କର ଶ୍ୟାମ କଳେବର ଓ ମୁଖ ପଦ୍ମ ମନ୍ଦହାସ ଯୁକ୍ତ ହୋଇଥାଏ । ତାଙ୍କ ହୃଦୟରେ କୌସ୍ତୁଭ ମାଳା ଶୋଭା ପାଉଥାଏ । ଦିଗମ୍ବର ହୋଇ ସେ ନିଜ ଜାନୁ ଦ୍ୱୟରେ ବାମ ହସ୍ତ ରଖି ଦକ୍ଷିଣ ହସ୍ତରେ କ୍ଷୀର ପାନ ପାଇଁ ମାଆଙ୍କ ସ୍ତନକୁ ସ୍ପର୍ଶ କରୁଥାନ୍ତି । ପଦ୍ମ କର୍ଣ୍ଣିକା ମଧ୍ୟରେ ଏଭଳି ଚିତ୍ର ଅଙ୍କନ କରାଯାଇଥାଏ ।

ଏହି ଚିତ୍ରର ଉତ୍ତରକୁ ସୁବର୍ଣ୍ଣ ବର୍ଣ୍ଣ ଯୁକ୍ତ ଲକ୍ଷ୍ମୀଙ୍କର ଚିତ୍ର ଅଙ୍କନ କରାଯାଏ । ବିଚିତ୍ର ବସ୍ତ୍ର ଓ ଭୂଷଣରେ ଭୂଷିତା ହୋଇ ସେ ଚନ୍ଦନ ବିଲେପିତ ହୋଇଥାନ୍ତି । ନିଜର ଦୁଇ ହସ୍ତରେ ଦେବକୀଙ୍କର ପାଦ ମଞ୍ଚାଳୁଥାନ୍ତି । ପଶ୍ଚିମରେ ସୁଭୂଷିତ ବାସୁଦେବଙ୍କର ଚିତ୍ର କରାଯାଏ । ନିଜ ହୃଦୟରେ ସେ କୃଷ୍ଣଙ୍କୁ ଧରି ଚକିତ ନୟନରେ ଚାହିଁ ଥିବାର ଭଙ୍ଗୀ କରାଯାଏ । ଫଣା ବିସ୍ତାର ପୂର୍ବକ ଅନନ୍ତ କୃଷ୍ଣଙ୍କ ଶିରକୁ ଆଚ୍ଛାଦିତ କରୁଥିବାର ଚିତ୍ର ଅଙ୍କିତ ହୋଇଥାଏ ।

ପୁଣି ଯୋଗମାୟାଙ୍କୁ ଜନ୍ମ ଦେଇଥିବା କନକବର୍ଣ୍ଣା ଯଶୋଦା ନୀଳବସ୍ତ୍ର ପରିହିତା ହୋଇ ନାନା ଅଳଙ୍କାର ବିମଣ୍ଡିତା ହୋଇ ନିଜର ଜାନୁ ଦ୍ୱୟରେ ଦୁଇହାତ ରଖି ଥିବାର ଚିତ୍ର କରାଯାଏ ।

ପୂର୍ବ ପଟରେ ଗର୍ଗମୁନିଙ୍କ ଚିତ୍ର ରଖାଯାଏ । ସ୍ଫଟିକ ସଦୃଶ ସ୍ୱଚ୍ଛ କାନ୍ତିଯୁକ୍ତ ମୁନି ଗୈରିକ ବସ୍ତ୍ର ପରିଧାନ କରିଥାନ୍ତି । ଜଟାଧାରୀ ଗର୍ଗ ଅକ୍ଷମାଳା ଧାରଣ କରି ଯମଙ୍କ ସଦୃଶ ଉଗ୍ର ନେତ୍ରଯୁକ୍ତ ହୋଇଥାନ୍ତି । ତାଙ୍କ ଶରୀରରୁ ସୂର୍ଯ୍ୟଙ୍କ ପରି ଉଦୀପ୍ତ ତେଜ ପ୍ରକାଶ ହେଉଥାଏ ।

ବାୟୁକୋଣରେ ଉଗ୍ରସେନଙ୍କ ଚିତ୍ର ବିରାଜିତ ହୋଇଥାଏ । ଗୌରବର୍ଣ୍ଣର ଉଗ୍ରସେନଙ୍କଠାରେ କିରୀଟ, ବଳୟ ଓ ନାନା ଆଭୂଷଣ ଶୋଭାପାଉଥାଏ । ସେ ଉତ୍ତମ ବସ୍ତ୍ର ପରିହିତ ହୋଇ ଖଡ୍ଗ ଓ ଢାଲ ଧାରଣ କରିଥାନ୍ତି।

ଅଗ୍ନିକୋଣରେ ଉତ୍ତମ ଲକ୍ଷଣସଂପନ୍ନା ରୋହିଣୀଙ୍କର ଚିତ୍ର ସ୍ଥାପିତ ହୋଇଥାଏ । କେତକୀ ପୁଷ୍ପ ସଦୃଶ ତାଙ୍କର ବର୍ଣ୍ଣ ନୀଳ ବସ୍ତ୍ର ପରିହିତା ରୋହିଣୀ ସୁନ୍ଦର ଆଭୂଷଣରେ ସଜ୍ଜିତା ହୋଇ ଯୋଡ ହସ୍ତରେ ସ୍ମିତ ହାସ୍ୟ ପ୍ରକାଶ କରୁଥାନ୍ତି ।

ଅଗ୍ରଭାଗରେ ଅର୍ଦ୍ଧଚନ୍ଦ୍ରାକାର ଚିତ୍ର ଓ ନୈଋତ କୋଣରେ ପୀତବର୍ଣ୍ଣ ନନ୍ଦଙ୍କର ଚିତ୍ର ରହିଥାଏ । ତାଙ୍କ ଶିରରେ ପଗଡି ଓ ହସ୍ତରେ ବାଡିଟିଏ ଶୋଭା ପାଉଥାଏ । ସୁନ୍ଦର ବସ୍ତ୍ରାବୃତ, ନାନା ଅଳଙ୍କାରରେ ମଣ୍ଡିତ ଓ ଲମ୍ବା ଶ୍ମଶ୍ରୁଯୁକ୍ତ ନନ୍ଦଙ୍କ ମୁଖ କିଛି କହିବା ଭଙ୍ଗୀରେ ରହିଥାଏ ।

ଐଶାନ୍ୟ କୋଣରେ ବଳଭଦ୍ରଙ୍କ ପ୍ରତିମା ସ୍ଥାପିତ ହୋଇଥାଏ। ନୀଳାମ୍ବର ପରିହିତ ବଳଭଦ୍ରଙ୍କ ଆକୃତି ଶରଦ୍‌ପୂର୍ଣ୍ଣିମାର ଚନ୍ଦ୍ରଙ୍କ ପରି ଆହ୍ଲାଦ ଦାୟକ ହୋଇଥାଏ। ତାଙ୍କ ଶିର ଉପରେ ବିକଟ ଫଣା ରହିଥାଏ ଏବଂ ସେ ହଳ ମୂଷଳ ଧାରଣ କରିଥାନ୍ତି ।

ସେଠାରେ ଚତୁର୍ଦ୍ଦିଗରେ ଦେବତା ମଣ୍ଡଳୀ ବନ୍ଦନା କରୁଥିବାର ଚିତ୍ର ପାଞ୍ଚବର୍ଣ୍ଣ ମୁରୁଜରେ ଅଙ୍କିତ ହୋଇଥାଏ । ଶ୍ରୀକୃଷ୍ଣଙ୍କ ଜନ୍ମୋତ୍ସବରେ ଏହିଭଳି ଚିତ୍ରପଟ ପ୍ରସ୍ତୁତ କରି ମଣ୍ଡଳରେ ବିରାଜମାନ କରାଯାଏ । ଭକ୍ତିଭାବ ସହକାରେ ସେଠାରେ ଚିତ୍ରପଟର ଦର୍ପଣ ରଖାଯାଏ । ଏହି ଦର୍ପଣ ଏକ ପଳ ରୂପାରେ ଗୋଲାକାର ଭାବରେ ନିର୍ମିତ ହୋଇଥାଏ । ତାହା ଅଭାବରେ ଅର୍ଦ୍ଧପଳ କିମ୍ବା ୧/୪ ପଳରେ ତିଆରି କରାଯାଏ ।

ଚିତ୍ରପଟ ସହିତ ଅଷ୍ଟଦଳ ପଦ୍ମ ଅତି ସୁନ୍ଦର ଭାବରେ ନିର୍ମିତ ହୋଇ ସାରିବା ପରେ ଆଚାର୍ଯ୍ୟ ସଂଯତମନା ହୋଇ ଶୁଦ୍ଧପୂତ ଭାବରେ ଆସନଠାରୁ ଅର୍ଘ୍ୟ ସଂସ୍କାର ପର୍ଯ୍ୟନ୍ତ କର୍ମ କ୍ରମାନୁସାରେ କରିଥାନ୍ତି । ପ୍ରଥମେ ପ୍ରଣବ ଓଁ କାର ଉଚ୍ଚାରଣ କରି ଦ୍ୱିତୀୟରେ କୃଷ୍ଣଙ୍କ ନାମ ଉଚ୍ଚାରଣ କରନ୍ତି । ତୃତୀୟରେ ନମଃ ଶବ୍ଦ ଉଚ୍ଚାରଣ କରି ଚତୁର୍ଥରେ ଆବାହନ ପୂର୍ବକ ଦେବତାଙ୍କୁ ଆମନ୍ତ୍ରଣ କରିଥାନ୍ତି । ତା'ପରେ ଆଶ୍ଚର୍ଯ୍ୟ ଅର୍ଘ୍ୟ, ଗନ୍ଧ, ପୁଷ୍ପ ଏବଂ ଦୀପ କ୍ରମ ଅନୁସାରେ ଦେଇ ସ୍ନାନକର୍ମ ଆରମ୍ଭ କରନ୍ତି।

ଦଧି ୬ ପଳ, କ୍ଷୀର ୬ ପଳ, ଘୃତ ୪ପଳ, ମହୁ ୩ ପଳ ଏବଂ ଖଣ୍ଡ ୨ ପଳ ଏକତ୍ର କରି ଗୋଟିଏ ପାତ୍ରରେ ପଞ୍ଚାମୃତ ପ୍ରସ୍ତୁତ କରନ୍ତି। ଏଥିରେ ଦେବତାମାନଙ୍କୁ ସ୍ନାନ କରାନ୍ତି। ପଚ୍ଚ ଦେବତାଙ୍କୁ ମଧ୍ୟ ସ୍ନାନ କରାଇ ମଞ୍ଚ ଉପରେ ରଖି ପୂଜା କାର୍ଯ୍ୟ ନିର୍ବାହ କରନ୍ତି। ଗୁଡ, କ୍ଷୀର, ଖଇ, ନଡିଆକୋରା, ଲଡୁ ନୈବେଦ୍ୟ ଦିଅନ୍ତି।

ଦେବକୀ, ବସୁଦେବ, ଯଶୋଦା, ନନ୍ଦ, ଲକ୍ଷ୍ମୀ, ବଳଭଦ୍ର, ଉଗ୍ରସେନ, ରୋହିଣୀ ଓ ଗର୍ଗ– ଏହି ଦେବତାମାନଙ୍କୁ ସ୍ୱ ସ୍ୱ ନାମରେ ଉଚ୍ଚାରଣ କରି ପୂଜା କରାଯାଏ। ପୂଜକ ଚନ୍ଦନ ଓ ଗନ୍ଧ ଦ୍ୱାରା ପୂଜା କାର୍ଯ୍ୟ କରିଥାନ୍ତି। ତା'ପରେ କ୍ରମାନ୍ୱୟରେ ପ୍ରାର୍ଥନା କରି ସମସ୍ତଙ୍କୁ ପୃଥକ ଭାବରେ ପୁଷ୍ପାଞ୍ଜଳି ଦେଇଥାନ୍ତି। ଏହାପରେ ବିସର୍ଜନ କରି ଶାନ୍ତି ମନ୍ତ୍ର ଜପ କରନ୍ତି ।

ଏଥି ଉତ୍ତାରୁ ବସ୍ତ୍ର ରହିତ ବାଳକୃଷ୍ଣଙ୍କୁ ନେଇ ଜଗନ୍ନାଥଙ୍କୁ ପ୍ରାର୍ଥନା କରି କୃଷ୍ଣଜନ୍ମ ଉତ୍ସବ ପାଳନ ପାଇଁ ଆଜ୍ଞା ମଗାଯାଏ । ଦାରୁବ୍ରହ୍ମ ମହାପ୍ରଭୁଙ୍କୁ ନମସ୍କାର କରି ତାଙ୍କ ଶ୍ରୀଅଙ୍ଗରୁ ଆଦର ପୂର୍ବକ ଅତି ମଞ୍ଜୁଳ ଆଜ୍ଞାମାଳ ଆଣି କୃଷ୍ଣଙ୍କୁ ପିନ୍ଧାଇ ଦିଆଯାଏ। ତା'ପରେ କୃଷ୍ଣଙ୍କୁ ଆଣି ମଣ୍ଡଳରେ ପୂର୍ବଦିଗକୁ ମୁଖ କରି ବିରାଜମାନ କରାଯାଏ । ଦେବକୀଙ୍କ ଗର୍ଭରେ ଥିବା ଅବସ୍ଥାକୁ ଚିନ୍ତା କରି ପୂଜା କରାଯାଏ । ଲିଆର ମୁଆଁ ନୈବେଦ୍ୟ କରି ବିତରଣ କରାହୁଏ । ଏହାପରେ ବାଳକୃଷ୍ଣଙ୍କ ମନ୍ତ୍ରରେ ଷୋଡ଼ଶ ଉପଚାରରେ ବିଶୁଦ୍ଧ ଭକ୍ତି ସହିତ କୃତାଞ୍ଜଳି ପୁଟ କରି ପୂଜା କରାଯାଏ ।

ଏ ପୂଜା ସମାପ୍ତି ପରେ ରୌପ୍ୟ ପାତ୍ରରେ ହଳଦୀପାଣି ଧରି 'ଏଜତୁ ଦଶମାସ୍ୟୋ' ମନ୍ତ୍ର ଯନ୍ତ୍ର ସହ ଉଚ୍ଚାରଣ କରନ୍ତି । ଦେବକୀଙ୍କ ଗର୍ଭରୁ କୃଷ୍ଣ ଜାତ ହେଲେ ବୋଲି ହୃଦୟରେ ଭାବନା କରି କୃଷ୍ଣଙ୍କ ପାଦପଦ୍ମ ନିକଟରେ ସେହି ହଳଦୀ ପାଣିକୁ ଢଳାଯାଏ । ତା'ପରେ ହୃଦୟରେ କୃଷ୍ଣଙ୍କର କୋମଳ ଅଙ୍ଗ ବିଶିଷ୍ଟ

ଘନଶ୍ୟାମ ମୂର୍ତ୍ତିକୁ ଚିନ୍ତା କରିବାକୁ ହୁଏ । ବାଳକୃଷ୍ଣ ଭଗବାନ ସୁନ୍ଦର ହସ୍ତ ପଦ ବିଶିଷ୍ଟ ହୋଇଥିବେ। ଈଷତ୍ ହାସ୍ୟମୁଖ ହୋଇ ସୁନ୍ଦର ଆଭୂଷଣରେ ଭୂଷିତ ହୋଇଥିବେ। ଶିରରେ କୀରିଟ, ଗଳାରେ କୌସ୍ତୁଭ ରତ୍ନମାଳା ଧାରଣ କରି ସେ ଚନ୍ଦନ ଚର୍ଚ୍ଚିତ ହୋଇଥିବେ। ତାଙ୍କର ମନୋହର ରୂପ ନାଭିନାଡ଼ ସଂଯୁକ୍ତ ହୋଇଥିବ। ଏହିଭଳି ରୂପ ମନେ ମନେ ଚିନ୍ତା କରି ଦୁଇଟା ଜୀରା ମିଶ୍ରିତ ତିନୋଟି ବଟିକା ପ୍ରସ୍ତୁତ କରାଯାଏ ।

ଜାଇଫଳ, ଲବଙ୍ଗ, ଅଳେଇଚ, ତେଜପତ୍ର–ଏଗୁଡିକୁ ପୃଥକ ଭାବରେ ଏକପଳ ଘୃତରେ ଭାଜି ଚୂର୍ଣ୍ଣ କରି ଏହି ଚୂର୍ଣ୍ଣର ଅର୍ଦ୍ଧ ପରିମାଣ ଶର୍କରା ସହିତ ସବୁ ଏକତ୍ର କରି ଗାଈ ଘିଅରେ ବଟିକା ପ୍ରସ୍ତୁତ କରାହୁଏ । ୧୦୮ଟି ବଟିକା ଲହୁଣୀ ସହ ମିଶାଇ ଜଳଦୋଷ ଶାନ୍ତି ନିମନ୍ତେ ଶ୍ରଦ୍ଧା ଓ ଭକ୍ତି ସହକାରେ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରାଯାଏ । ତାହାପରେ ଅଗ୍ନିଶର୍ମା ଦୟଣାମାଳ, ଚନ୍ଦନ, ପୀତବସ୍ତ୍ର ଓ ହରିଦ୍ରା ଅର୍ପଣ କରନ୍ତି ।

ଏହାପରେ ଅଗ୍ନିଶର୍ମା ଓ ଅର୍ଚ୍ଚକ ଉଭୟେ ଜଗତର ମଙ୍ଗଳ ନିମନ୍ତେ କର୍ପୂର ଆରତି କରନ୍ତି। ପଶ୍ଚିମ ଦିଗରେ ଯମୁନା ନଦୀର ଅବସ୍ଥିତିକୁ କଳ୍ପନା କରିଥାନ୍ତି। ସପ୍ତଫଣା ବିଶିଷ୍ଟ ଅନନ୍ତ ଦ୍ୱାରା ଆଚ୍ଛନ୍ନ କରି କୃଷ୍ଣଙ୍କୁ ଯମୁନା ପାର କରାନ୍ତି। ଉତ୍ତରକୁ ଚାରିଦ୍ୱାର ବିଶିଷ୍ଟ ମଣ୍ଡପ ପ୍ରସ୍ତୁତ କରି ତୋରଣ ଶୋଭିତ କରାଯାଏ। ଚୂନରେ ଲିପା ହୋଇ ତହିଁରେ ସୁନ୍ଦର ଚାନ୍ଦୁଆ ଟଣା ହୋଇ ଚାମର ପଡୁଥାଏ ।

ଏହିଭଳି ସୁସଜ୍ଜିତ ମଣ୍ଡପରେ ଭଦ୍ରାସନ ଉପରେ ରାମ ଓ କୃଷ୍ଣଙ୍କୁ ବସାଇ ମଙ୍ଗଳ ବୃଦ୍ଧି ନିମନ୍ତେ ବସୋର୍ଧାରା ବିଧାନ କରାଯାଏ । କୁଶମୁଷ୍ଟି ପ୍ରସ୍ତୁତ କରି ଆଦର ସହକାରେ 'ବାମମଦ୍ୟ' ମନ୍ତ୍ର ଉଚ୍ଚାରଣ କରି ସ୍ୱର୍ଣ୍ଣ କ୍ଷୁରରେ କୃଷ୍ଣଙ୍କର ନାଭିଚ୍ଛେଦନ କରାହୁଏ। ତାହାପରେ ଷଷ୍ଠୀ ଦେବୀଙ୍କ ପୂଜା କରି ଗୌର୍ଯ୍ୟାଃ ପୁତ୍ରୋ ଯଥା ସ୍କନ୍ଦ, ପ୍ରାର୍ଥନା ବୋଲାଯାଏ । ଆଚାର୍ଯ୍ୟ ଷଷ୍ଠୀଦେବୀଙ୍କ ପୂଜା କରିବା ପରେ ପଞ୍ଚାମୃତରେ ଶ୍ରୀକୃଷ୍ଣଙ୍କୁ ସ୍ନାନ କରାନ୍ତି । ତା'ପରେ 'କୃଷ୍ଣୋଦ୍ଭବସି' ମନ୍ତ୍ର ଜପ କରି ନାମକରଣ କରି ତଚକ୍ଷୁଃ ମନ୍ତ୍ରରେ ଆଚାର୍ଯ୍ୟ ବହିର୍ନିଷ୍କ୍ରମଣ ସଂସ୍କାର ସଂପାଦନ କରିଥାନ୍ତି ।

'ଅନ୍ନାଦ୍ ପରିସୃତ' ମନ୍ତ୍ରରେ ପୂଜକ ଅନ୍ନପ୍ରାଶନ କରାନ୍ତି। ତା'ପରେ କର୍ଣ୍ଣବେଧ କରି 'ପରିଧାସ୍ୟୈ' ମନ୍ତ୍ରରେ ବସ୍ତ୍ର ଓ ଯଜ୍ଞୋପବୀତ ମନ୍ତ୍ରରେ ଉପବୀତ ସମର୍ପଣ କରନ୍ତି। ଅବତାର ସହସ୍ରାଣି ମନ୍ତ୍ରରେ ପୁଷ୍ପାଞ୍ଜଳି ଦିଅନ୍ତି । କୃଷ୍ଣଜନ୍ମ ଯେଉଁ ବିଧିରେ ଅର୍ଚ୍ଚନା କଲେ ଜଗତର ମଙ୍ଗଳ ହୁଏ, ସେହି ବିଧିରେ କୀର୍ତ୍ତି, ଆୟୁ ଓ ସୁଖ ବୃଦ୍ଧି ନିମନ୍ତେ ବଳରାମଙ୍କର ମଧ୍ୟ ଅର୍ଚ୍ଚନା କରାଯାଏ । କ୍ଷୀରୋଦାର୍ଣ୍ଣବ ସମ୍ଭୂତ ପାଠ କରି ଚନ୍ଦ୍ରଙ୍କୁ ଅର୍ଘ୍ୟ ଦିଆଯାଏ ।

ତାହାପରେ ଅଗ୍ନିଶର୍ମା ରାମ ଓ କୃଷ୍ଣଙ୍କୁ ବନ୍ଦାପନା କରନ୍ତି । କାହାଳୀ ଘଣ୍ଟା, ମର୍ଦ୍ଦଳ ଓ ଅନ୍ୟାନ୍ୟ ନାନା ପ୍ରକାର ବାଦ୍ୟ ବଜାଇ ଚାମର ସେବା କରାଯାଏ । ସେବକମାନେ ଧଳା ଛତ୍ରୀ ଓ ତରାସ ଧରିଥାନ୍ତି । ଜୟ ଜୟ ଶବ୍ଦରେ ମେଘ ଗର୍ଜନ ସଦୃଶ ଚାରିଆଡ଼ ଉଚ୍ଛୁଳି ଉଠୁଥାଏ। ଝାଞ୍ଜ , କରତାଳ ଧ୍ୱନି ମଧ୍ୟରେ ତିନିଲୋକର ଆନନ୍ଦ ବର୍ଦ୍ଧନକାରୀ ଶ୍ରୀକୃଷ୍ଣଙ୍କର ଜନ୍ମ ମହୋତ୍ସବ ପାଳନ କରାଯାଏ ।

ଏହି ମହୋତ୍ସବ ମଧ୍ୟରେ ଦିବ୍ୟ ପଲଙ୍କରେ ଶୟନ କରିଥିବା ରାମ ଓ କୃଷ୍ଣଙ୍କୁ ଗରୁଡ଼ଙ୍କ ସମ୍ମୁଖକୁ ନିଆଯାଏ । ସେଠାରେ ଭକ୍ତ ପଲଙ୍କ ଉପରେ ରାମ ଓ କୃଷ୍ଣଙ୍କୁ ବସାଇ ଖସାଲଡୁ ଓ ନଡ଼ିଆ କୋରାରେ ତୃପ୍ତ କରାଯାଏ । ତାହାପରେ ଷୋଡ଼ଶ ଉପଚାରରେ ପୂଜା ଓ ବନ୍ଦାପନା କରିସାରି ରମଣୀୟ ଦୋଳାରେ ରାମ ଓ କୃଷ୍ଣଙ୍କୁ ଝୁଲାଯାଏ । ଏହାପରେ ସଂସାର ସିନ୍ଧୁ ତାରକ ରାମ ଓ କୃଷ୍ଣଙ୍କୁ ସ୍ନାନ କରାଯାଏ । ଶେଷରେ ରାଜା ନିଜର ମଙ୍ଗଳ କାମନା କରି ଶ୍ରଦ୍ଧାର ସହ ଆଚାର୍ଯ୍ୟଙ୍କୁ ଦକ୍ଷିଣା ଭାବରେ ଏକ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରାଯିବାର ବିଧି ରହିଛି। ଭରିଏ ସୁବର୍ଣ୍ଣର ଅଭାବରେ ଅର୍ଦ୍ଧ ପରିମାଣ ସୁବର୍ଣ୍ଣ ଦିଆଯାଇପାରେ। ଉତ୍ତମ ବସ୍ତ୍ର ଓ ଗୋଦାନ କରି ତୃପ୍ତ କରିବାର ନିୟମ ମଧ୍ୟ ରହିଛି। କାରଣ ଦକ୍ଷିଣା ବିନା ସକଳ କର୍ମ ନିଷ୍ଫଳ ହୁଏ । ତା'ପରେ ପରାତ୍ପର ବିଷ୍ଣୁ ଶ୍ରୀଜଗନ୍ନାଥଙ୍କର ଚତୁର୍ଥ କାଳିକ ପୂଜା ଯଥାବିଧି ପୂର୍ବପରି ପରାଯାଏ।

ସପ୍ତମୀ ଦିନ ଅର୍ଦ୍ଧରାତ୍ରିରେ ଅଷ୍ଟମୀ ଯୋଗ ହେଲେ ସେହିଦିନ କୃଷ୍ଣଜନ୍ମ ପୂଜା ଓ ଉପବାସ ପାଳନ କରାଯାଏ । ଅଷ୍ଟମୀ ଦିନ ଅର୍ଦ୍ଧରାତ୍ରରେ ନବମୀ ଯୋଗ ହେଲେ ସେହିଦିନ କୃଷ୍ଣଜନ୍ମ ପୂଜା କରଣୀୟ ନୁହେଁ । ଜନ୍ମାଷ୍ଟମୀ ତିଥି ବୁଧବାର କିମ୍ବା ସୋମବାରରେ ହୋଇ ରୋହିଣୀ ନକ୍ଷତ୍ର ଯୁକ୍ତ ହେଲେ ତାହା 'ମହାଜୟନ୍ତୀ' ହୁଏ । ଏହି ପୁଣ୍ୟପ୍ରଦ ମହାଜୟନ୍ତୀ ଯୋଗରେ ଉପବାସ ଓ ରାତ୍ରି ଜାଗରଣ କଲେ କୋଟିଏ ଗୋଦାନର ଫଳ ପ୍ରାପ୍ତ ହୁଏ। ଅଶ୍ୱମେଧ ଯଜ୍ଞ, ତୁଳା ପୁରୁଷ ଦାନ, ସମ୍ବତ୍ସର ସତ୍ର ଓ କୋଟିଏ ସୁବର୍ଣ୍ଣ ଦାନର ପୁଣ୍ୟ ବ୍ରତଚାରୀଙ୍କୁ ମିଳିଥାଏ ।

ପୁଷ୍ପହାସ, ଏଏଲ୍ –୬୨
ଭୀମଟାଙ୍ଗି, ଭୁବନେଶ୍ୱର–୨

# ନୈବେଦ୍ୟରୁ ନିର୍ମାଲ୍ୟ ପର୍ଯ୍ୟନ୍ତ

**ଜୟନ୍ତ ପଟ୍ଟନାୟକ**

ବିଶ୍ୱବ୍ରହ୍ମାଣ୍ଡର ଜମ୍ବୁଦୀପ (ଭାରତ) ଅନ୍ତର୍ଗତ ଉତ୍କଳଭାଗର ନୀଳାଚଳଧାମ ଶ୍ରୀକ୍ଷେତ୍ରର ନୀଳସୁନ୍ଦର ପର୍ବତସ୍ଥ ଶ୍ରୀମନ୍ଦିର ରତ୍ନବେଦୀରେ ବିରାଜମାନ ପ୍ରଭୁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ । ଜଗନ୍ନାଥଙ୍କୁ ସାଧାରଣ ମଣିଷ ଅବତାର ଭଳି ବିବେଚନା କରାଯାଏ । ଯେମିତି ମଣିଷ ସମାଜର ଅନ୍ୟାୟ ଅତ୍ୟାଚାର ଦେଖିଶୁଣି କିଛି କହିବେ ନାହିଁ, କରିବେ ନାହିଁ ବୋଲି ତାଙ୍କର ହାତ ପାଦ ନାହିଁ, ନାକ କାନ ନାହିଁ । ଖାଲି ବିରାଟ ବିରାଟ ଦୁଇଟି ଚକା ଆଖି । ଅପରପକ୍ଷେ କୁହାଯାଇଛି, ତାଙ୍କର ପାଦ ନାହିଁ ସତ ସେ ସଂସାର ଭ୍ରମଣ କରନ୍ତି, ତାଙ୍କର ହାତ ନାହିଁ ସତ ମାତ୍ର ସବୁକିଛି କରିପାରନ୍ତି, ତାଙ୍କର କାନ ନାହିଁ ସେ ସବୁ ଶୁଣି ପାରନ୍ତି, ତାଙ୍କର ନାକ ନାହିଁ, ସେ ସବୁ ଆଘ୍ରାଣ କରିପାରନ୍ତି । ସେଥିପାଇଁ ସନ୍ଥ ତୁଳସୀ ଦାସ ଲେଖିଛନ୍ତି–

ବିନୁ ପଦ ଚଲହି ଶୁନହିଁ ବିନୁ କାନା<br>
କର ବିନୁ କରହି କରମ ବିଧି ନାନା ।

ଜନ୍ମଠୁଁ ମୃତ୍ୟୁ ପର୍ଯ୍ୟନ୍ତ ଦୈନନ୍ଦିନ ମଣିଷର ଯେମିତି ଜୀବନଚର୍ଯ୍ୟା ନିତ୍ୟକର୍ମ, ସେମିତି ପ୍ରଭୁଙ୍କର ପୂଜାର୍ଚ୍ଚନା, ବିଧିବିଧାନ ଇତ୍ୟାଦି ପାଳନ କରାଯାଏ । ପ୍ରତ୍ୟୁଷରୁ ଦନ୍ତମାର୍ଜନ, ମହାସ୍ନାନ ପରେ ବିଭିନ୍ନ ପ୍ରକାର ଭୋଗ ପରେ, ସାୟଂକାଳରେ ସନ୍ଧ୍ୟା ଧୂପ, ଗୀତଗୋବିନ୍ଦ ସଂଗୀତ ପରେ ରାତିରେ ଶୟନ କାଳରେ ଦେବଦାସୀ ନୃତ୍ୟ ଇତ୍ୟାଦି ମନୋରଞ୍ଜନ କାର୍ଯ୍ୟକ୍ରମ ମଧ୍ୟ ହୁଏ । ବାରମାସରେ ୨୪ପର୍ବ ପାଳିତ ହୁଏ ଶ୍ରୀମନ୍ଦିରରେ ।

ମନୁଷ୍ୟ ପ୍ରତ୍ୟହ କେତେଥର ଖାଦ୍ୟ ଗ୍ରହଣ କଲା ପରି ଶ୍ରୀଜଗନ୍ନାଥଙ୍କଠାରେ ଅମୃତମଣୋହୀ ଭାବେ କେତେକେତେ ପ୍ରକାର ଯେ ଭୋଗ ଲାଗେ ତା'ର ତୁଳନା ନାହିଁ । କୁହାଯାଏ ଠାକୁରଙ୍କଠାରେ ଛପନ ପଉଟି ଭୋଗ ଲାଗେ । ପ୍ରକାର ଭେଦ ଆଉ କହିବାର ନାହିଁ । ସେଥିପାଇଁ ତାଙ୍କୁ କୁହାଯାଏ ଛପନଭୋଗୀ । ଏଇସବୁ ଭୋଗ ବା ନୈବେଦ୍ୟକୁ କୁହାଯାଏ ମହାପ୍ରସାଦ ।

ଶ୍ରୀମନ୍ଦିରର ବିଶାଳ ରୋଷଶାଳାରେ ସୁଆରମାନେ ପ୍ରସ୍ତୁତ କରନ୍ତି ବିଭିନ୍ନ ପ୍ରକାରର ଅନ୍ନ ବ୍ୟଞ୍ଜନ, ପିଠା, ଖଜା ଇତ୍ୟାଦି ଶ୍ରୀଜୀଉମାନଙ୍କ ନିମନ୍ତେ । କିନ୍ତୁ ପ୍ରକୃତରେ ମା' ମହାଲକ୍ଷ୍ମୀ ଅନ୍ନପୂର୍ଣ୍ଣା ହିଁ ଏସବୁ ପ୍ରସ୍ତୁତ କରନ୍ତି ପରୋକ୍ଷରେ । କାରଣ ଶ୍ରୀମନ୍ଦିରକୁ ଯେଉଁଦିନ ଯେତେ ସଂଖ୍ୟକ ଯାତ୍ରୀ ଆସିଲେ ମଧ୍ୟ କେବେ ଅବଢ଼ା ନିଅଣ୍ଟ ପଡ଼ିବାର ନଜିର ନାହିଁ । ଏଇଥିପାଇଁ ଶ୍ରୀମନ୍ଦିର ଆନନ୍ଦ ବଜାରକୁ କୁହାଯାଇଛି ପୃଥିବୀର ସବୁଠୁ ବଡ଼ ହୋଟେଲ । ମା' ଲକ୍ଷ୍ମୀ ନରାନ୍ଧିଲେ ସତେ କ'ଣ ଜଗନ୍ନାଥ ସାଆନ୍ତେ ଖାଆନ୍ତେ ! ଏହି ହେତୁରୁ ସୁଗୃହିଣୀଙ୍କୁ କୁହାଯାଏ ଅର୍ଣ୍ଣପୂର୍ଣ୍ଣା ଅର୍ଥାତ୍ ସମସ୍ତଙ୍କୁ ଯିଏ ଖୁଆଇ ପିଆଇ ଶାନ୍ତ କରାଇପାରେ ।

ସୁଆରମାନେ ରୋଷ ଘରେ ଅଧିଷ୍ଠିତ ମହାଲକ୍ଷ୍ମୀଙ୍କ ନିକଟରେ ପୂଜାର୍ଚ୍ଚନା ପୂର୍ବକ ବୈଷ୍ଣବାଗ୍ନି ସାହାଯ୍ୟରେ ମହାପ୍ରସାଦ ପ୍ରସ୍ତୁତ କରନ୍ତି । ଶୁଣାଯାଏ ଏହି ବୈଷ୍ଣବାଗ୍ନି ହଜାର ହଜାର ବର୍ଷ ଧରି ଶ୍ରୀମନ୍ଦିରରେ ଅନିର୍ବାପିତ ଭାବେ ଜଳୁଅଛି । ପ୍ରସ୍ତୁତ ଅନ୍ନବ୍ୟଞ୍ଜନ ନିଭୃତରେ ନିଆଯାଇ ଶ୍ରୀଜୀଉମାନଙ୍କ ନିକଟରେ ନୈବେଦ୍ୟ ବଢ଼ାଯାଏ । ଠାକୁରମାନଙ୍କୁ ଷୋଡ଼ଶ ପଚାରରେ ପୂଜା କଲା ପରେ ମଧ୍ୟ ଏହା ମହାପ୍ରସାଦ ବୋଲାଯାଏ ନାହିଁ । ଠାକୁରମାନଙ୍କ ନୈବେଦ୍ୟକୁ ନେଇ ମା' ବିମଳାଙ୍କ ନିକଟରେ ସମର୍ପଣ କଲା ପରେ ତାହା ମହାପ୍ରସାଦରେ ପରିଣତ ହୁଏ । ମହାପ୍ରସାଦ ଅର୍ଥାତ୍ ମା' ପ୍ରସାଦ ବା ମହାପ୍ରସାଦ । ତେଣୁ କେବଳ ଶ୍ରୀମନ୍ଦିରର ପ୍ରସାଦ ହିଁ ମହାପ୍ରସାଦ, ଅନ୍ୟ କୌଣସି ସ୍ଥାନରେ ମହାପ୍ରସାଦ ନାହିଁ ।

ଏ ସଂପର୍କରେ ଏକ ପୌରାଣିକ ପ୍ରମାଣ ମଧ୍ୟ ଅଛି । ସ୍କନ୍ଦ ପୁରାଣ ଅନୁଯାୟୀ ଶ୍ରୀବିଷ୍ଣୁ ପ୍ରତ୍ୟହ ଦକ୍ଷିଣତଟର ରାମେଶ୍ୱରରେ ସ୍ନାନ କରନ୍ତି । ଉତ୍ତରର ବଦ୍ରିଧାମରେ ଧ୍ୟାନ କରନ୍ତି । ପୂର୍ବତଟର ନୀଳାଚଳ ଧାମରେ ଭୋଜନ କରନ୍ତି ଏବଂ ଶେଷରେ ପଶ୍ଚିମତଟର ଦ୍ୱାରକା ଧାମରେ ବିଶ୍ରାମ ଗ୍ରହଣ କରନ୍ତି । ତେଣୁ ଏକମାତ୍ର ପୁରୀ ନୀଳାଚଳଧାମ ହିଁ ଖାଦ୍ୟପୀଠ ବା ଭୋଜନଧାମ । ତେଣୁ ପୁରୀରେ ହିଁ କେବଳ ମହାପ୍ରସାଦ ଉପଲବ୍ଧ । ପୁନଶ୍ଚ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଦ୍ୱାଦଶ ଶତାବ୍ଦୀରେ ଭାରତର ଚାରିପ୍ରାନ୍ତରେ ଚାରିଧାମରେ ୪ଟି ପୀଠ ସ୍ଥାପନ କରିଥିଲେ । ଦକ୍ଷିଣରେ ରାମେଶ୍ୱର ନିକଟସ୍ଥ ଶୃଙ୍ଗେରୀ ପୀଠ, ପଶ୍ଚିମରେ ଦ୍ୱାରକା ନିକଟରେ ଶାରଦା ପୀଠ, ଉତ୍ତରରେ ବଦ୍ରିନାଥ ଧାମରେ ଜ୍ୟୋତିଃ ପୀଠ ଓ ପୂର୍ବରେ ନୀଳାଚଳ ଧାମରେ ଗୋବର୍ଦ୍ଧନ ପୀଠ । ଗୋବର୍ଦ୍ଧନ ପୀଠ ଅର୍ଥାତ୍ ଭୋଗବର୍ଦ୍ଧନ ପୀଠ ବା ଭୋଜନ ପୀଠ । ଅତଏବ ପୁରୀ ନୀଳାଚଳ ଧାମ ହିଁ ଖାଦ୍ୟପୀଠ ବା ଭୋଜନ ଧାମ ଅର୍ଥାତ୍ କେବଳ ଶ୍ରୀମନ୍ଦିରରେ ହିଁ ମହାପ୍ରସାଦ ଉପଲବ୍ଧ ।

ପୁନଶ୍ଚ ଶ୍ରୀଜୀଉମାନଙ୍କ ପ୍ରସାଦ କିଭଳି ମହାପ୍ରସାଦ ହେଲା ସେ ସଂବନ୍ଧେ ଏକ ସୁନ୍ଦର କାହାଣୀ ଅଛି ପୁରାଣରେ । ଏକଦା ଦେବ ଦେବ ମହାଦେବ ଯାଇଥିଲେ ଶ୍ରୀବିଷ୍ଣୁ ନାରାୟଣଙ୍କ ଦର୍ଶନ ନିମନ୍ତେ । ମହାଦେବ ବୈକୁଣ୍ଠ ପୁରୀରେ ପହଞ୍ଚିବା ସମୟକୁ ପ୍ରଭୁ ନାରାୟଣ ସଦ୍ୟଭୋଜନ ସମାପ୍ତି କରି ଉଠିଥାନ୍ତି । ତାଙ୍କର କିଛି ଉଚ୍ଛିଷ୍ଟ ଦେଖି ମହାଦେବ ପରମ ଆଗ୍ରହରେ ତାହା ସେବନ କଲେ । ତତ୍‌ପଶ୍ଚାତ୍ କୈଳାସପୁରୀକୁ ଲେଉଟାଣୀ ସମୟରେ ମହର୍ଷି ନାରଦ ଦେଖାହେଲେ । ଶ୍ରୀଶିବଙ୍କ ଦାଢ଼ିରେ ଲାଗିଥିବା ପ୍ରଭୁ ନାରାୟଣଙ୍କ ଉଚ୍ଛିଷ୍ଟର ଏକମାତ୍ର ଦାନା ନାରଦ ଅତି ଆଗ୍ରହରେ ସେବନ କଲେ । ଏକଥା ମାତା ପାର୍ବତୀ ଜାଣି ପାରିଲେ । ସଂସାରରେ ଦୁର୍ଲଭ ଶ୍ରୀମନ୍ ନାରାୟଣୀଙ୍କର ଉଚ୍ଛିଷ୍ଟରେ ସମସ୍ତଙ୍କ ମନ । ମାତା ପାର୍ବତୀ କହିଲେ ନାରଦ ଯେଉଁ ଦାନାଟି ପାଇଲେ, ସେଇଟି ତ ଥିଲେ ସିଏ ସେବନ କରିଥାନ୍ତେ । ସେ ଉଚ୍ଛିଷ୍ଟ ଆଉ ମିଳିବ କାହୁଁ । ତହୁଁ ମାତା ପାର୍ବତୀ ଶ୍ରୀମନ୍ ନାରାୟଣଙ୍କ ଉଚ୍ଛିଷ୍ଟ ପ୍ରାପ୍ତି ନିମନ୍ତେ ଘୋର ତପସ୍ୟାରେ ମଗ୍ନ ହେଲେ । ତାଙ୍କ ତପସ୍ୟାରେ ତୃପ୍ତ ହୋଇ ଶ୍ରୀମନ୍ ନାରାୟଣ ବର ପ୍ରଦାନ କଲେ– 'ହେ ଦେବୀ ପାର୍ବତୀ କଳି ଯୁଗରେ ଭାରତର ପୂର୍ବତଟର ନୀଳାଚଳ ଧାମରେ ମୁଁ ଯେତେବେଳେ ବଡ଼ଠାକୁର ଶ୍ରୀବଳଭଦ୍ର, ଶକ୍ତିରୂପିଣୀ ଭଉଣୀ ସୁଭଦ୍ରା ଓ ଜଗତର ନାଥ – ଜଗନ୍ନାଥ ଏବଂ ଚକ୍ରରାଜ ସୁଦର୍ଶନ ନାମରେ ଚତୁର୍ଦ୍ଧାମୂର୍ତ୍ତି ରୂପରେ ଶ୍ରୀମନ୍ଦିରରେ ପୂଜା ପାଇବି, ତୁମେ ସେତେବେଳେ ମୋ ଶ୍ରୀମନ୍ଦିର ବେଢ଼ା ଭିତରେ ମୋ ମନ୍ଦିର ନିକଟରେ ମା' ବିମଳା ଭାବେ ପୂଜା ପାଇବ । ମୋ ପାଖରେ ନୈବେଦ୍ୟ ହେଉଥିବା ଭୋଗ ତୁମଠାରେ ସମର୍ପଣ ପରେ ଯାଇ ମହାପ୍ରସାଦ ରୂପେ ପରିଗଣିତ ହେବ । ଅତଏବ ପ୍ରତିଦିନ ତୁମେ ମୋର ଉଚ୍ଛିଷ୍ଟ ପ୍ରାପ୍ତ ହେବ । ମୁଁ ମନ୍ଦିରର ଅଧିଷ୍ଠାତା ଠାକୁର ହେଲେ ମଧ୍ୟ ତୁମେ ହେବ କ୍ଷେତ୍ରାଧିଶ୍ୱରୀ । ତୁମର ଶକ୍ତି ମୋ ନିକଟରେ ବସିଥିବା ଭଉଣୀ ସୁଭଦ୍ରାଙ୍କ ଠାରେ ବିଦ୍ୟମାନ ହେବ । ସେଥିପାଇଁ ମୁଁ ହେବି ବଳିଆରଭୁଜ । ତୁମକୁ ଯେଉଁ ଭୈରବ ମନ୍ତ୍ରରେ ପୂଜା କରାଯାଏ, ଦେବୀ ସୁଭଦ୍ରା ଓ ମୋତେ ମଧ୍ୟ ବୈଷ୍ଣବ ମନ୍ତ୍ର ସହିତ ସେହି ଭୈରବ ମନ୍ତ୍ରରେ ପୂଜା କରାଯିବ । ଏଥିପାଇଁ ଶାସ୍ତ୍ରରେ କୁହାଯାଇଛି 'ସୁଭଦ୍ରାଷ୍ଟ ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ' ।

ମହାପ୍ରସାଦର ଅନ୍ୟ ନାମ 'ଅବଢ଼ା' । ଅର୍ଥାତ୍ ଏହା ବଢ଼ା ଯାଏ ନାହିଁ । ସେହିପରି କୁଡୁଆରୁ ବାହାର କରାଯାଇ ସେବନ କରାଯାଏ । ଅବଢ଼ା ଖାଇବାରେ କୌଣସି ବାଛବିଚାର, ଭେଦଭାବ, ଜାତି ଅଜାତି, ଧନୀ ନିର୍ଦ୍ଧନ ସେମିତି କିଛି ନାହିଁ । ଯାହାଠୁ ଯିଏ ଖାଇ ପାରିଲା । ବ୍ରାହ୍ମଣଠୁଁ ଚଣ୍ଡାଳ ମଧ୍ୟ ଖାଇପାରେ । ଚଣ୍ଡାଳଠୁଁ ଶ୍ରେଷ୍ଠୀ ମଧ୍ୟ ଖାଇପାରେ । ସେମିତି କିଛି ବାରଣ ନାହିଁ । ଖାଇସାରି ମସ୍ତକରେ ହାତ ବୋଲି ଦେଲେ ହେଲା । ହସ୍ତ ପ୍ରକ୍ଷାଳନର ଆବଶ୍ୟକତା ନାହିଁ । ଏମିତି କୋଉଠି ଅଛି ଭଲା ! ଘୋଷଯାତ୍ରା ଅବସରରେ ଗୁଣ୍ଡିଚା ମନ୍ଦିରରେ ପ୍ରସ୍ତୁତ ଅବଢ଼ାକୁ କୁହାଯାଏ 'ଆଡ଼ପ ଅବଢ଼ା' । ତାକୁ ପାଇବାକୁ ଭକ୍ତମାନେ ବାଉଳା । କାରଣ ଏହାପ୍ରାୟ ଦୁଷ୍ପ୍ରାପ୍ୟ, ଅଳ୍ପଦିନର । ପୁନଶ୍ଚ ଅବଢ଼ାକୁ କୁହାଯାଏ ବ୍ରହ୍ମଅନ୍ନ ବା ବ୍ରହ୍ମାନ୍ନ । କାରଣ ବ୍ରହ୍ମ ବା ପିଣ୍ଡ ଏହି ଅନ୍ନରୁ ହିଁ ତ ଶକ୍ତି ପାଏ । ଓଡ଼ିଆର ତ ଅନ୍ନମୟ ପିଣ୍ଡ । ଦୈନିକ ଦୁଇଥର ଭାତ ବା ଅନ୍ନ ନଖାଇଲେ ଓଡ଼ିଆଙ୍କର ନ ଚଳେ । ତେଣୁ ଚାରିଧାମ ମଧ୍ୟରୁ ଏକ ଧାମ ଓଡ଼ିଆଙ୍କର ଶ୍ରୀକ୍ଷେତ୍ର ଭୋଜନ ଧାମ, ଭୋଗ ବର୍ଦ୍ଧନ ବା ଗୋବର୍ଦ୍ଧନ ପୀଠ ଭାବେ ବିଖ୍ୟାତ ଓ ଯଥାର୍ଥ ।

'ଅବଢ଼ା'ର ଅନ୍ୟ ଗୋଟିଏ ନାଁ 'କୈବଲ୍ୟ' । ସକଳ ପ୍ରକାର ବୈକଲ୍ୟ ବା ବିକଳ ଭାବକୁ ଦୂର କରେ ବୋଲି ନାଁ ତା'ର କୈବଲ୍ୟ । ଅର୍ଥାତ୍ କୈବଲ୍ୟ ପ୍ରାପ୍ତି ପରେ ଆଉ କୌଣସି ପାର୍ଥିବ ଆଶା ଅପୂରଣୀୟ ରହେ ନାହିଁ । କୈବଲ୍ୟ ପ୍ରାପ୍ତି ମାତ୍ରେଣ ଭୁକ୍ତବ୍ୟ ଏବଂ ପ୍ରାପ୍ତି ମାତ୍ରେଣ ମୋକ୍ଷପ୍ରାପ୍ତି ହୁଏ । ସେଥିପାଇଁ ମୃତ୍ୟୁ ଆସନ୍ନ ବ୍ୟକ୍ତିର ତୁଣ୍ଡରେ କୈବଲ୍ୟ ଦିଆଯାଏ । ଶ୍ରୀମହାପ୍ରଭୁଙ୍କ ମୁଖନିସୃତ ବାଣୀ ହେଉଛି 'ମଦ୍ କୈବଲ୍ୟ ମମାଧିକମ୍' । ଅର୍ଥାତ୍

କୈବଲ୍ୟର ମହାତ୍ମ୍ୟ ମୋ ଠାରୁ ବଳି । ଯେମିତି ନାମୀ ଠାରୁ ନାମ ବଡ଼ । ଅର୍ଥାତ୍ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର କହିଛନ୍ତି, ମୋର ମହାତ୍ମ୍ୟ ଠାରୁ ମୋ ନାମର ମହାତ୍ମ୍ୟ ବଡ଼ । ଆପଣମାନେ ଜାଣିଥିବେ ରାମନାମ ଜପ କରୁ କରୁ ଦସ୍ୟୁ ରତ୍ନାକର କିପରି ମହାତ୍ମା ବାଲ୍ମିକୀରେ ପରିଣତ ହୋଇଥିଲେ ।

ମହାପ୍ରସାଦ ଶୁଖିଗଲେ, ବଳକା 'ଅବଢ଼ା'କୁ ଶୁଖାଇ ଅଥବା ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ 'ଅବଢ଼ା'ରୁ ଯେଉଁ ଶୁଖିଲା ମହାପ୍ରସାଦ ପ୍ରସ୍ତୁତ ହୁଏ, ତାକୁ କୁହାଯାଏ ନିର୍ମାଲ୍ୟ । ଶ୍ରୀମନ୍ଦିର ଅଭ୍ୟନ୍ତରସ୍ଥ ନୀଳାଚଳ ଉପବନ ସମୀପ ଏକ ବିଶାଳ ଚଉତରାରେ ନିର୍ମାଲ୍ୟ ପ୍ରସ୍ତୁତ କରାଯାଏ । ତା'ର ନାମ 'ନିର୍ମାଲ୍ୟ-ଖଳା' । ଏଇ ନିର୍ମାଲ୍ୟ ଟିକେ ପାଇଁ ସାରା ଜଗତ ବାଇ । ହିନ୍ଦୁମାନଙ୍କର ବିଶେଷ କରି ପ୍ରତ୍ୟେକ ଓଡ଼ିଆର ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ନିର୍ମାଲ୍ୟ ଲୋଡ଼ା ହୋଇଥାଏ । ମୃତ୍ୟୁ ଆସନ୍ନ ସମୟରେ ତୁଣ୍ଡରେ ନିର୍ମାଲ୍ୟ ପାଣି ପାଇବା ପ୍ରତି ହିନ୍ଦୁଙ୍କର ଏକାନ୍ତ କାମ୍ୟ । ଓଡ଼ିଆର ପ୍ରତ୍ୟେକ ଶୁଭ କାର୍ଯ୍ୟରେ ନିମନ୍ତ୍ରଣ ସହିତ ନିର୍ମାଲ୍ୟ ଦିଆଯାଏ । ଏହି ନିର୍ମାଲ୍ୟକୁ ଛୋଟ ଛୋଟ କନା ପୁଡ଼ିଆ କରି ସର୍ବତ୍ର ପଠାଯାଏ । ମହାପ୍ରସାଦର ଯେତେବେଳେ ଏତେ ଖ୍ୟାତି, ଏତେ ମହାତ୍ମ୍ୟ, ତା'ର ଉତ୍ପତ୍ତି ସ୍ଥଳ ଶ୍ରୀନାରାୟଣଙ୍କର ଭୋଜନ ପୀଠ ବା ଭୋଗବର୍ଦ୍ଧନ ଧାମ ନୀଳାଚଳ ଭୂଖଣ୍ଡର ବାସିନ୍ଦା ଭାବେ ଆମେମାନେ କେତେ ପୁଣ୍ୟବାନ, ଭାଗ୍ୟବାନ ସତେ ! ଏହି ପ୍ରଭୁଙ୍କୁ ଦର୍ଶନ ନିମନ୍ତେ, ତାଙ୍କ ମହାପ୍ରସାଦ ଟିକେ ସେବନ ସକାଶେ ପୃଥିବୀର କୋଣ ଅନୁକୋଣରୁ ଛୁଟି ଆସନ୍ତି ଲକ୍ଷ ଲକ୍ଷ ଭକ୍ତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ । ଆତିଥ୍ୟ ପରାୟଣ ଉତ୍କଳବାସୀ ଧନ୍ୟ ହୋଇଯାଆନ୍ତି । ଆସନ୍ତାବର୍ଷ ୨୦୧୫ରେ ହେବ ବିଶ୍ୱବିଖ୍ୟାତ ନବକଳେବର ମହୋତ୍ସବ ଶ୍ରୀଜୀଉମାନଙ୍କର । ଅସଂଖ୍ୟ ଲୋକଙ୍କର ସମାଗମ ହେବ ଏହି ମହାନ୍ ତଥା ବିଚିତ୍ର ପର୍ବରେ । ଆସନ୍ତୁ, ଆମେ ସଭିଏଁ ଏବେଠୁଁ ପ୍ରସ୍ତୁତ ହୋଇବା ଅତିଥିମାନଙ୍କର ସୁସତ୍କାର ନିମନ୍ତେ । ଆନନ୍ଦରେ ଗାଇ ଉଠିବା–

'ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।'

ଉପ ବିଭାଗୀୟ ଅଧିକାରୀ
ବନ୍ଦର ନିର୍ଦ୍ଦେଶାଳୟ
ଓଡ଼ିଶା, ଭୁବନେଶ୍ୱର

# ନୀରବତା

ଦେବାଶିଷ ପାତ୍ର

ନୀରବତା ସବୁବେଳେ
ତୁଠ ପଥର ପରି
ଗୋଟିଏ ନିଆରା ଆତ୍ମୀୟ ।
ବନ୍ଧୁ ବାନ୍ଧବ ସଖା ସହୋଦରଙ୍କଠୁଁ
ସେ ବେଶୀ ବିଶ୍ୱସ୍ତ
ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ।
ଅପମାନ ଯେତେ ଯେତେ
ଲଦି ଦେଲେବି
ହାଲୁକା କରି ଦେଇଥାଏ
ଅସମୟ ବେଳେ ।
ଛାଇପରି ପାଖେ ଥାଏ
ଏପରିକି ମରିଗଲା ବେଳେ
ଶ୍ମଶାନ ଯାଏ ପାଛୋଟି ଦେଇ ଆସେ
ଶୂନ୍ୟେ ଶୂନ୍ୟେ ଏ କଳା ଶ୍ରୀମୁଖ ।

ଗଣିତ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ସଂସ୍କୃତି ଓ ପ୍ରଗତି

ଶକୁନ୍ତଳା ପ୍ରତିହାରୀ ନନ୍ଦ

ପ୍ରଗତି କହିଲେ ଉତ୍ତରୋତ୍ତର ଉନ୍ନତିକୁ ବୁଝାଏ । ଆର୍ଥିକ ହେଉ ଅବା ବୈଜ୍ଞାନିକ, ଚିକିତ୍ସା ସମ୍ବନ୍ଧୀୟ ହେଉ ଅଥବା ଉପଗ୍ରହ ସମ୍ବନ୍ଧୀୟ, ପ୍ରଗତି ସବୁବେଳେ ମଣିଷ ଜୀବନରେ ଭରିଥାଏ ସୁଖ ଓ ସମୃଦ୍ଧି । ଆଦ୍ୟ ମନୁଷ୍ୟ ସମାଜ କେବେ ସୃଷ୍ଟି ହେଲା ସେ ବିଷୟରେ କୌଣସି ଏକ ମତ ନଥିଲେ ବି, ସମାଜଶାସ୍ତ୍ରୀମାନେ ଗୋଟେ କଥାରେ ଏକମତ ଯେ ପରିବର୍ତ୍ତିତ ସମୟ ସହିତ ମଣିଷ ସମାଜ ପ୍ରଗତିର ପଥରେ ଆଗକୁ ଗଡ଼ି ଆସିଛି । ଯାହା ଫଳରେ ଜଙ୍ଗଲରେ ପଶୁମାନଙ୍କ ପରି ବୁଲୁଥିବା ମଣିଷ ଶିଖିଲା ନିଆଁର ବ୍ୟବହାର, ଚକର ତିଆରି, ଚାଷକାମ, ଗାଁର ସ୍ଥାପନା ପରି ସଭ୍ୟ ମଣିଷର ରୀତିନୀତି । ସମୟ ଆଗକୁ ଗଡ଼ିବାରେ ଅନେକ ପ୍ରକାର ଉଦ୍ଭାବନ ଓ ଆବିଷ୍କାର କରି ମଣିଷ ନିଜର ଜୀବନକୁ ସୁନ୍ଦର ଓ ସୁଖମୟ କରି ପାରିଲା । ମଣିଷର ବୌଦ୍ଧିକ ବିକାଶ ସହିତ ତାଳ ଦେଇ ଜ୍ଞାନ କୌଶଳର ଯେପରି ବିକାଶ ଘଟିଥିଲା, ସେହିପରି ଭାବେ ବୃଦ୍ଧି ଘଟିଥିଲା ଅର୍ଥ ବ୍ୟବସ୍ଥାର । ଛୋଟ ଛୋଟ ଗାଁ ଓ ଜନବସତି ରୂପାନ୍ତରିତ ହୋଇଥିଲା ଦେଶକୁ ଓ ଦେଶର ସୁରକ୍ଷା ଦାୟିତ୍ୱ ନ୍ୟସ୍ତ କରାଗଲା ରାଜାଙ୍କ ଉପରେ । ଦେଶର ସୁରକ୍ଷା ସହିତ ପ୍ରଜାମାନଙ୍କ ସୁଖ ସୁବିଧା ମଧ୍ୟ ରାଜାଙ୍କ ଦାୟିତ୍ୱର ପରିସୀମା ଅନ୍ତର୍ଭୁକ୍ତ ରହିଥିଲା । ସେଥିପାଇଁ ଅର୍ଥନୀତି ଓ ଅର୍ଥବ୍ୟବସ୍ଥା ପରି ଜୀବିକା ଓ ଅର୍ଥ ସମ୍ବନ୍ଧୀୟ ଜ୍ଞାନର ଅଭ୍ୟୁଦୟ ହେଲା । ରାଜାଙ୍କର ରାଜ୍ୟ ଶାସନ ଅନ୍ତର୍ଗତ ଅର୍ଥନୀତିର ପ୍ରଣୟନ (ଯେପରିକି କର ସମ୍ବନ୍ଧୀୟ ନୀତି, ଜନସାଧାରଣଙ୍କ ପାଇଁ ଉନ୍ନତିମୂଳକ କାର୍ଯ୍ୟର ଖର୍ଚ୍ଚ ନୀତି ଇତ୍ୟାଦି) ରାଜାଙ୍କର ଦାୟିତ୍ୱରେ ରହିଥିଲା । ମଣିଷର ବୌଦ୍ଧିକ ବିକାଶ ବା ପ୍ରଗତି ଏତିକିରେ ସୀମିତ ନ ରହି ଆହୁରି ଆଗକୁ ବଢ଼ି ଚାଲିଲା । ଅଠରଶହ ଶତାବ୍ଦୀର ଶେଷଭାଗକୁ ୟୁରୋପୀୟ ମହାଦେଶରେ ସୃଷ୍ଟି ହୋଇଥିଲା ଯୁଗାନ୍ତକାରୀ ଉଦ୍ୟୋଗୀକରଣରେ କ୍ରାନ୍ତି । ଏହାର ଫଳସ୍ୱରୂପ ଉତ୍ପାଦନ ପ୍ରକ୍ରିୟାରେ କେବଳ ମଣିଷମାନେ ନିୟୋଜିତ ନ ହୋଇ, ମେସିନ୍‌ମାନଙ୍କର ପ୍ରବେଶ ହେଲା । ମେସିନ୍ ସାହାଯ୍ୟରେ ଏକ ସମୟରେ ଅନେକ ଗୁଣା ଅଧିକ ଉତ୍ପାଦ ସୃଷ୍ଟି ହୋଇପାରିଲା । ଉତ୍ପାଦନ ପ୍ରକ୍ରିୟାରେ ଏ ପ୍ରକାର ପରିବର୍ତ୍ତନ ଅର୍ଥ ବ୍ୟବସ୍ଥାର ଚିତ୍ରକୁ ବଦଳାଇ ଦେଇଥିଲା । ପ୍ରଚୁର ଉତ୍ପାଦ ପାଇଁ ଦରକାର ଥିବା କଞ୍ଚାମାଲ୍ ତଥା ବଜାରର ସୁଯୋଗ ଦେଇଥିଲେ ୟୁରୋପୀୟ ଦେଶମାନଙ୍କର ଉପନିବେଶ ଦେଶଗୁଡ଼ିକ । ଭାରତ ଉପମହାଦେଶ, ସାଉଥ୍ ଆମେରିକା, ଲାଟିନ୍ ଆମେରିକା, ଆଫ୍ରିକୀୟ ମହାଦେଶ ପରି ପ୍ରାକୃତିକ ପରିବେଶରେ ଭରପୂର ଅଞ୍ଚଳରୁ ଗୋଟେ ପଟେ ପ୍ରାକୃତିକ କଞ୍ଚାମାଲ୍‌ର ଅବାଧ ରପ୍ତାନି ଚାଲିଥିଲା ଓ ଅନ୍ୟପଟେ ସେହିସବୁ କଞ୍ଚାମାଲ୍‌ରେ ମେସିନ୍ ଦ୍ୱାରା ତିଆରି ହେଉଥିବା ଖାଉଟି ଦ୍ରବ୍ୟ ଉପନିବେଶ ଦେଶମାନଙ୍କରେ ବିକ୍ରି କରାଯାଇଥିଲା । ଏ ପ୍ରକାର ବ୍ୟବସ୍ଥାର କେତୋଟି ସୁଦୂରପ୍ରସାରୀ ପ୍ରଭାବ ରହିଥିଲା ।

୧. ଉପନିବେଶବାଦ ଲାଗି ଶାସକ ଦେଶମାନେ ଉପନିବେଶର ପ୍ରକୃତିକୁ ବିଚାରହୀନ ଭାବେ ଦୋହନ କରି ଚାଲିଲେ । ଏହା ଫଳରେ ଜଙ୍ଗଲ ପରେ ଜଙ୍ଗଲ ପଦା ହୋଇ ଯାଇଥିଲା, ଜମି ପରେ ଜମି ଅନୁର୍ବର ହୋଇଯାଇଥିଲା ।

୨. ବିଦେଶୀ ମେସିନ୍‌ରେ ତିଆରି ଖାଉଟି ଦ୍ରବ୍ୟଗୁଡ଼ିକ ସରକାରୀ ନିୟମ ଲାଗି, ସ୍ଥାନୀୟ ବଜାରରେ ହାତରେ ତିଆରି ଦ୍ରବ୍ୟଠାରୁ ଶସ୍ତାରେ ମିଳିବାକୁ ଆରମ୍ଭ ହୋଇଥିଲା । ସ୍ଥାନୀୟ ଲୋକମାନେ ମେସିନ୍‌ଜାତ ଶସ୍ତା ଖାଉଟି ଦ୍ରବ୍ୟକୁ ଅଧିକ ପସନ୍ଦ କରିଥିଲେ ଓ ତା'ର ପ୍ରଭାବରେ ସ୍ଥାନୀୟ ଉତ୍ପାଦନ ବ୍ୟବସ୍ଥା ଭୁଷୁଡ଼ି ପଡ଼ି ବିଦେଶ କୈନ୍ଦ୍ରିକ ହୋଇଯାଇଥିଲା ।

୩. ନୂଆ ଏକ ଅର୍ଥ ବ୍ୟବସ୍ଥାର ଅଭ୍ୟୁଦୟ ହୋଇଥିଲା ଯୋଗାଣଭିତ୍ତିକ ଅର୍ଥ ବ୍ୟବସ୍ଥା ।

ସମୟର ଅଗ୍ରଗତି ସହିତ ରାଜନୀତିର ଦୃଶ୍ୟରେ ପରିବର୍ତ୍ତନ ଆସିଲା । ଉପନିବେଶବାଦର ଅବକ୍ଷୟ ହେଲା, ହେଲେ ନୂଆ ଅର୍ଥ ବ୍ୟବସ୍ଥାର ପ୍ରଗତି ଘଟିଲା । ଉତ୍ପାଦନକାରୀ ଦେଶ ବଦଳରେ ସଂସ୍ଥା ସୃଷ୍ଟି ହେଲା । ମେସିନ୍ ପରେ ମେସିନ୍‌ର ଉଦ୍ଭାବନ ହେଲା । କେବଳ ଖାଉଟି ଦ୍ରବ୍ୟର ଉତ୍ପାଦନରେ ମେସିନ୍‌ର ସହଯୋଗ ନ ରହି ମଣିଷ ଜୀବନର ତଥା ସମାଜର ପ୍ରତ୍ୟେକ ସ୍ତରରେ ମେସିନ୍‌ର ବ୍ୟବହାର କରାଗଲା । କିନ୍ତୁ ଅନ୍ୟ ପଟେ ମେସିନ୍ ତିଆରି କରିବା ଓ ମେସିନ୍‌ରେ ଖାଉଟି ଦ୍ରବ୍ୟ ତିଆରି କରିବାର ସୁଯୋଗ ସୀମିତ ରହିଲା । ଅଳ୍ପ କେତେକ ଶିଳ୍ପପତିମାନଙ୍କ ପାଖରେ ନୂଆ ଅର୍ଥ ବ୍ୟବସ୍ଥା ଅନ୍ତର୍ଗତ ସୀମିତ ଶିଳ୍ପପତି ଓ ଶିଳ୍ପସଂସ୍ଥା, ସମ୍ପୂର୍ଣ୍ଣ ଅର୍ଥ ବ୍ୟବସ୍ଥା ଓ ସାଧାରଣ ଲୋକମାନଙ୍କ ଜୀବନ ଉପରେ କାୟା ବିସ୍ତାର କରିଚାଲିଲେ । ଏପରି ବ୍ୟବସ୍ଥା ଦ୍ୱାରା ପୃଥିବୀବାସୀଙ୍କର ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ବଢ଼ିଲା, କିନ୍ତୁ ତା'ର ଅଧାରୁ ଅଧିକା ଭାଗ ଠୁଳ ରହିଲା ସୀମିତ ଶିଳ୍ପପତିମାନଙ୍କ ହାତରେ । କଥାଟା ଏତିକିରେ ସୀମିତ ନୁହେଁ କିମ୍ବା ଆଲୋଚନାର ବିଷୟବସ୍ତୁ ଧନର ଠୁଳତା ନୁହେଁ । ଚିନ୍ତାର ବିଷୟ ହେଉଛି ପୃଥିବୀ ପୃଷ୍ଠରେ ଜନଜୀବନର ସ୍ଥିରତା । ଶିଳ୍ପ ସଂସ୍ଥାମାନଙ୍କର ମାତ୍ରାଧିକ ପ୍ରକୃତିର ଦୋହନ କାର୍ଯ୍ୟ ଏବେ ଜନଜୀବନ ପାଇଁ ଘୋର ବିପଦ ସୃଷ୍ଟି କରିଲାଣି । ପ୍ରଦୂଷଣରେ ଭରିଗଲାଣି ପୃଥିବୀପୃଷ୍ଠର ଜଳ, ସ୍ଥଳ ଓ ଆକାଶ । ଯାହାର କୁପ୍ରଭାବରେ ଋତୁମାନଙ୍କର ଅନିୟମିତତା, ପ୍ରଚଣ୍ଡ ରୌଦ୍ରତାପ ସହିତ ଗ୍ରୀଷ୍ମଋତୁର ଆଧିକ୍ୟ ଅନୁଭବ, ମେରୁ ଅଞ୍ଚଳର ବରଫ ତରଳିବା ପ୍ରକ୍ରିୟା ତ୍ୱରାନ୍ୱିତ ହେବା ସହିତ ସମୁଦ୍ର ସ୍ତରର ବୃଦ୍ଧି ଓ ସମୁଦ୍ର କୂଳିଆ ଅଞ୍ଚଳ ସମୁଦ୍ର ଗର୍ଭରେ ଲୀନ ହେବାର ଆଶଙ୍କା, ବାତ୍ୟା–ବନ୍ୟା ପରି ଦୈବିଦୁର୍ବିପାକର ବାରମ୍ବାର ଆଗମନ ଏମିତି ଅନେକ ସମସ୍ୟାର ଦୁଆର ମୁହଁରେ ଛିଡ଼ା ହୋଇଛନ୍ତି ପୃଥିବୀବାସୀ । ଏ ପ୍ରକାର ପରିବର୍ତ୍ତନ କେବଳ କାଗଜ କଲମରେ ଲିଖିତ ଭାଷାରେ ସୀମିତ ନୁହେଁ । ଏହାର ଭୀଷଣ ଓ ପ୍ରଚଣ୍ଡ ପ୍ରଭାବ ରହିଛି ସାଧାରଣ ଲୋକମାନଙ୍କ ଜୀବନଯାତ୍ରା ଉପରେ । ଧନ, ଜୀବନ ଓ ଜୀବିକା ହରାଇ ପ୍ରତ୍ୟେକ ବର୍ଷ ଲକ୍ଷ ଲକ୍ଷ ଲୋକ ଦାରିଦ୍ର୍ୟ ସୀମା ରେଖା ତଳକୁ ଚାଲି ଆସୁଛନ୍ତି । ତେଣୁ ପ୍ରଶ୍ନ ଉଠୁଛି ପ୍ରଗତି ଯଦି ଧ୍ୱଂସ ଓ ବିଭୀଷିକା ଆଡ଼କୁ ବାଟ କଢ଼ାଉଛି ତେବେ ସେ ପ୍ରଗତିର ଅର୍ଥ କ'ଣ ?

ବିଂଶ ଶତାବ୍ଦୀର ଶେଷଭାଗ ଆଡ଼କୁ ଆର୍ଥିକ ଉନ୍ନତି ଓ ବିଧ୍ୱଂସର ମିଳିତ ଅଗ୍ରଗତି ଦେଖିପାରିଥିଲେ ମିଳିତ ଜାତିସଂଘ । ସେଥିପାଇଁ ପରିବେଶ ଓ ଉନ୍ନତି କମିଶନ ନାମକ ଗୋଟିଏ କମିଶନ କରାଯାଇଥିଲା । ଏ କମିଶନ୍‌ର ମୁଖ୍ୟ ଥିଲେ ନରୱେର ପ୍ରାକ୍ତନ ପ୍ରଧାନମନ୍ତ୍ରୀ ବ୍ରୁଣ୍ଡଲ୍ୟାଣ୍ଡ ଓ ସିଏ ଯେଉଁ ରିପୋର୍ଟ ତିଆରି କରିଥିଲେ ତା'ର ନାଁ ଥିଲା 'ଆମର ସାଧାରଣ ଭବିଷ୍ୟତ' । ଏହି ରିପୋର୍ଟରେ ବ୍ରୁଣ୍ଡଲ୍ୟାଣ୍ଡ ପ୍ରଥମ କରି ଗୋଟିଏ ଶବ୍ଦ ବ୍ୟବହାର କରିଥିଲେ ତାହା ଥିଲା 'ଚିରସ୍ଥାୟୀ ଉନ୍ନତି' । ଚିରସ୍ଥାୟୀ ଉନ୍ନତି କେବଳ ଆର୍ଥିକ ଉନ୍ନତିର କଥା କହୁ ନ ଥିଲା, ଏହା ଭିତରେ ଥିଲା ବର୍ତ୍ତମାନ ପିଢ଼ି ଓ ଭବିଷ୍ୟତ ପିଢ଼ିମାନଙ୍କର ଉନ୍ନତିର କଥା । 'ଆମର ସାଧାରଣ ଭବିଷ୍ୟତ' ଅନ୍ତର୍ଗତ ଚିରସ୍ଥାୟୀ ଉନ୍ନତିର ଅର୍ଥ 'ଉନ୍ନତି ଯାହା ଭବିଷ୍ୟତ ପିଢ଼ିର ଆବଶ୍ୟକତା ପୂରଣ କରିବାର ସାମର୍ଥ୍ୟକୁ ଅକ୍ଷୁଣ୍ଣ ରଖି ବର୍ତ୍ତମାନ ପିଢ଼ିର ଆବଶ୍ୟକତାକୁ ପୂରଣ କରିପାରୁଥିବ ।' ବର୍ତ୍ତମାନ ପିଢ଼ି ଓ ଭବିଷ୍ୟତ ପିଢ଼ିମାନଙ୍କ ଆବଶ୍ୟକତାର ପୂର୍ତ୍ତିରେ ସମନ୍ୱୟ ଆଣିବା ହେଉଛି ଚିରସ୍ଥାୟୀ ଉନ୍ନତିର ମୂଳ ଲକ୍ଷ୍ୟ । କିନ୍ତୁ ଏ ପ୍ରକାର ଉନ୍ନତି ସମ୍ଭବ ହୋଇ ପାରିବ ଯେତେବେଳେ ଆମେ କଡ଼ାକଡ଼ି ଭାବେ ଅର୍ଥନୈତିକ ଓ ରାଜନୈତିକ ଶକ୍ତିର ସମାନତା ପାଳନ କରିପାରିବା । ଅନ୍ୟପକ୍ଷରେ ପ୍ରାକୃତିକ ସମ୍ପଦର ଦ୍ରୁତ ଅବକ୍ଷୟର କାରଣ ହେଉଛି ଅର୍ଥନୈତିକ ଓ ରାଜନୈତିକ ଶକ୍ତିର ଅସମାନତା । ପରିବେଶ ଓ ନଈକୁ ପ୍ରଦୂଷଣ କରୁଥିବା ଶିଳ୍ପସଂସ୍ଥା ବିନା କୌଣସି ବାଧା ପ୍ରତିବନ୍ଧକରେ ଖସି ଯାଇପାରେ କାରଣ ସେହି ଅଞ୍ଚଳରେ ବସବାସ କରୁଥିବା ଲୋକମାନେ ଗରିବ ଏବଂ ସଠିକ ଭାବେ ସେ ଶିଳ୍ପ ସଂସ୍ଥା ପ୍ରତି ବିରୋଧ ପ୍ରଦର୍ଶନ କରିବାରେ ଅସାମର୍ଥ୍ୟ । ଲକ୍ଷ ଲକ୍ଷ ହେକ୍ଟର ଜଙ୍ଗଲକୁ କାଟି ସଫା କରି ଦେଉଥିବା କାଠ ମାଫିଆଙ୍କ ବାହୁବଳ ଆଗରେ ଜଙ୍ଗଲର ଆଦିମ ଅଧିବାସୀମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ନ୍ତି । ତେଣୁ ଗୋଟେ ଅର୍ଥରେ କହିବାକୁ ଗଲେ ଲୋକ–ଲୋକ, ଦେଶ–ଦେଶ ଭିତରେ ସାମାଜିକ ନ୍ୟାୟର ପ୍ରତିଷ୍ଠା ଯେ ପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ ସେ ପର୍ଯ୍ୟନ୍ତ ଚିରସ୍ଥାୟୀ ଉନ୍ନତି ସମ୍ଭବପର ନୁହେଁ ।

ଚିରସ୍ଥାୟୀ ଉନ୍ନତିକୁ ଅଧିକ ଫଳପ୍ରଦ କରିବା ପାଇଁ ବିଶ୍ୱସ୍ତରରେ ଅନେକ ଗବେଷଣାତ୍ମକ କାର୍ଯ୍ୟକ୍ରମ ଜାରି ରହିଛି । ସେ ମଧ୍ୟରୁ 'ସଂଯୁକ୍ତ ସହର ଓ ସ୍ଥାନୀୟ ସରକାର' ନାମକ ସଂସ୍ଥାର ତୃତୀୟ ବିଶ୍ୱସ୍ତରୀୟ ସମ୍ମିଳନୀ ଉଲ୍ଲେଖଯୋଗ୍ୟ । ୨୦୧୦ ମସିହାରେ ମେକ୍ସିକୋ ସହରରେ ଅନୁଷ୍ଠିତ ହୋଇଥିବା ଏହି ବିଶ୍ୱସ୍ତରୀୟ ସମ୍ମିଳନୀରେ ଚିରସ୍ଥାୟୀ ଉନ୍ନତି ସମ୍ପର୍କିତ ଏକ ସନ୍ଦର୍ଭ

ପ୍ରକାଶ ପାଇଥିଲା । ସେ ସନ୍ଦର୍ଭରେ 'ଚିରସ୍ଥାୟୀ ଉନ୍ନତିର ଚକ୍ର' ନାମକ ଏକ ସଂଜ୍ଞା ଓ ତା'ର ଚାରୋଟି ସ୍ତମ୍ଭ ବିଷୟରେ ସୂଚନା ଥିଲା । ଏ ପ୍ରକାର ସନ୍ଦର୍ଭକୁ ଅନ୍ୟ ସହଯୋଗୀ ସଂସ୍ଥାମାନେ ଗ୍ରହଣ କରିଥିଲେ । ସନ୍ଦର୍ଭ ଅନୁଯାୟୀ ଚିରସ୍ଥାୟୀ ଉନ୍ନତିର ଚାରୋଟି ସ୍ତମ୍ଭ, ଅର୍ଥନୈତିକ, ରାଜନୈତିକ, ପରିବେଶ ଓ ସଂସ୍କୃତି ମଧ୍ୟରୁ ଶେଷ ସ୍ତମ୍ଭଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ । ସଂସ୍କୃତିର ପ୍ରଭାବ ଉନ୍ନତି ଉପରେ ସୁଦୂରପ୍ରସାରୀ । ଏହା ପ୍ରାକୃତିକ ପରିବେଶ ଓ ମଣିଷର ଆବଶ୍ୟକତା ଭିତରେ ସମନ୍ୱୟ ରକ୍ଷା କରି ସମାଜକୁ ବିନା ବାଧାବିଘ୍ନରେ ଆଗକୁ ବଢ଼ାଇବାରେ ବିଶେଷ ଭାବେ ସାହାଯ୍ୟ କରେ । ସଂସ୍କୃତି ତା'ର ସାମଗ୍ରିକ ବେଷ୍ଟନି ଭିତରେ ବାନ୍ଧି ରଖେ ପରିବେଶ, ଋତୁଚକ୍ର, ସମ୍ବଳ, ଜୀବିକା, ଖାଦ୍ୟ, ବସ୍ତ୍ର, ନୃତ୍ୟ, ଗୀତ ପରି ମଣିଷ ଜୀବନର ଅନେକ ବାସ୍ତବତା ଓ ଆବଶ୍ୟକତା । ସେଥିପାଇଁ ସଂସ୍କୃତି ସହିତ ବାନ୍ଧି ରହିଥିବା ମଣିଷର ଆଶା ଓ ଆବଶ୍ୟକତା ପୂରଣୀୟ ଓ ସିଏ ପ୍ରକୃତି, ପରିବେଶ ପ୍ରତି କ୍ଷତିକାରକ ହୋଇ ପାରେନି । ଅନ୍ୟ ଭାଷାରେ କହିବାକୁ ଗଲେ ଉନ୍ନତ ସଂସ୍କୃତି ସମାଜରେ ପ୍ରତିଷ୍ଠା କରିପାରେ ସାମାଜିକ ନ୍ୟାୟ । ବର୍ତ୍ତମାନର ସାମାଜିକ ନ୍ୟାୟ ନିଶ୍ଚିତ ରୂପେ ଭବିଷ୍ୟତର ବଂଶଧରମାନଙ୍କ ପାଇଁ ଉନ୍ନତିର ମାର୍ଗ ପ୍ରଶସ୍ତ କରିପାରିବ । ସେଥିପାଇଁ ବର୍ତ୍ତମାନ ସମୟର ଆବଶ୍ୟକତା ହେଉଛି 'ସଂସ୍କୃତି ସମ୍ବଳିତ ପ୍ରଗତି', ଯାହା ଉପରେ ଅର୍ଥନୀତି ନିର୍ଦ୍ଧାରଣକର୍ତ୍ତା ଦୃଷ୍ଟି ଦେବା ନିହାତି ଆବଶ୍ୟକ ।

ସ୍ତମ୍ଭକାର

# ଚକାଡୋଳା ବଡ଼ ଦୋଷ କରିଛ

ମିନତି ମହାପାତ୍ର

ଚକାଡୋଳା ଦେଉଳରେ ବସିଛ
ଭାଇ ଭଉଣୀଙ୍କ ପାଖେ ରହିଛ
ମହାଲକ୍ଷ୍ମୀ ଅନ୍ନପୂର୍ଣ୍ଣା, ଅନ୍ନ ଟେକି ଦେଲେ ସିନା,
ଭାଇ ଭଉଣୀ ଭୋଜନ କରୁଛ
ତଥାପି ଲକ୍ଷ୍ମୀଙ୍କୁ ଏକା ରଖିଛ ।

ବରଷକେ ଶ୍ରୀଗୁଣ୍ଡିଚା, ଭାଇ ଭଉଣୀଙ୍କ ଇଚ୍ଛା
ତାଙ୍କୁ ଧରି ଦାଣ୍ଡେ ବିଜେ ହେଉଛ,
ଲକ୍ଷ୍ମୀଙ୍କୁ ତ ଏକା ଛାଡି ଯାଇଛ ।

ଭାଇ ଭଉଣୀ ସଙ୍ଗରେ ରହି ମାଉସୀ ମା' ଘରେ
ଆନନ୍ଦରେ ସେଠି ଦିନ କାଟୁଛ
ଲକ୍ଷ୍ମୀଙ୍କ କଥା କି ଟିକେ ଭାବୁଛ ?

ରହଣୀ ଶେଷ କରି, ଭାଇ ଭଉଣୀଙ୍କୁ ଧରି
ବାହୁଡାବିଜେ ଏବେ କରୁଛ
ଲକ୍ଷ୍ମୀଙ୍କ କଥା କି ମନେ ରଖିଛ ?

ରଥପରେ ଢଳି ଢଳି ଶୁଣି କେତେ କରତାଳି
ସିଂହଦ୍ୱାରେ ଆସି ଉଭା ହୋଇଛ
ଲକ୍ଷ୍ମୀଙ୍କୁ ତ ଏକା ଛାଡି ଯାଇଛ ।

କୋପେ ଲକ୍ଷ୍ମୀ ଠାକୁରାଣୀ ରଥକାଠ ଖଣ୍ଡେ ହାଣି
ଦେଉଳେ ଗଲେଣି କିସ ଭାବୁଛ
ଲକ୍ଷ୍ମୀଙ୍କୁ ତ ଏକା ଛାଡି ଯାଇଛ ।

ଭାଇ ଭଉଣୀଙ୍କ ପାଇଁ ନିଜ ଶିର ଦିଅ ନୋଇଁ
ଯାଅ ହେ କବାଟ ବାଡାଅ କିଆଁ ଛିଡା ହୋଇଛ
ବଡ ପଣିଆକୁ ହେ ମନରୁ ପୋଛ ।

ମାନ ପଛେ ଗଲେ ଯାଉ, ଆସନ ଖଣ୍ଡିକ ରହୁ
ଦୋଷ ତ କରିଛ କିଆଁ ଏତେ ଭାବୁଛ
ଜଳକା କାହିଁକି ମାରି ଯାଉଛ ?

ଦେବୀ ଲକ୍ଷ୍ମୀ ଅନ୍ନପୂର୍ଣ୍ଣା ଦୋଷ କରିଦେବେ କ୍ଷମା
ଯାଅ ହେ ବେଗେ କାହିଁ ଡେରି କରୁଛ
ଚକାଡୋଳା ବଡ ଦୋଷ କରିଛ ।

ଏନ୍– ୧/୨୦, ଆଇଆରସି ଭିଲେଜ
ନୟାପଲ୍ଲୀ, ଭୁବନେଶ୍ୱର

# ବିଡମ୍ବିତ ଇତିହାସର ରଣାଙ୍ଗନ ଗୋହିରା ଟିକିରି

ଶାନ୍ତନୁ କୁମାର ମହାନ୍ତି

ଉତ୍କଳର ଆଦ୍ୟପୀଠ ଯାଜପୁରରୁ ଭଦ୍ରକାଳୀ ପୀଠ ଭଦ୍ରକକୁ ଆସିବା ବାଟରେ ବୌଦ୍ଧକୀର୍ତ୍ତି ବିମଣ୍ଡିତ ଧର୍ମ ନଗ୍ର ବା ଧାମନଗର । ମଝିରେ ବହିଯାଉଛି ଗୋଟିଏ ନଈ ବୈତରଣୀ, ଯାହାର ଶାଖା ନଦୀଟିଏ ଗେଙ୍ଗୁଟି । ସେଇ ଗେଙ୍ଗୁଟି ନଦୀତୀରସ୍ଥ ମରୀଚିକାମୟୀ ରଣପ୍ରାନ୍ତର ଗୋହିରା ଟିକିରିକୁ ଦେଖିଲେ ଆଖି ଆଗରେ ନାଚିଯାଏ ଆଜନ୍ମ ସ୍ୱାଧୀନା ଉତ୍କଳ ଭୂଇଁର ଗତଯୁଗର ଗୋଧୂଳି, ଇତିହାସର ଅବୟବରୁ ପ୍ରାଣ ଚାଲିଯାଏ ।

ବୈତରଣୀ ଅଙ୍କୁ ବହିଣ ଗେଙ୍ଗୁଟି ପ୍ରସନ୍ନନୀରା
ଧୋଉଅଛି ଯହିଁ ମରୀଚିକାମୟୀ କ୍ଷେତ୍ର ଗୋହିରା ।

(ରାଧାନାଥ ରାୟ)

ଧାମନଗରଠାରେ ମରହଟ୍ଟା ରାଜତ୍ୱ କାଳରେ ସେନାପତି ଜଗୁ ପଣ୍ଡିତ 'ଜଗୁ ସାଗର' ନାମରେ ଏକ ପ୍ରକାଣ୍ଡ ପୁଷ୍କରିଣୀ ଖୋଳାଇ ଥିଲେ । ଏହି ପୋଖରୀ କୂଳରେ ଦଣ୍ଡାୟମାନ ହୋଇ ଦକ୍ଷିଣକୁ ଦୃଷ୍ଟି ନିକ୍ଷେପ କଲେ ଯେଉଁ ପାଟବିଲ ବୈତରଣୀ ନଦୀର ଉତ୍ତରକୂଳ ପର୍ଯ୍ୟନ୍ତ ବିସ୍ତୃତ, ତାହାର ନାମ ଗୋହିରା କ୍ଷେତ୍ର ବା ଗୋହିରା ଟିକିରି । ଶୌର୍ଯ୍ୟର ସ୍ମୃତିବୋଳା ସେଦିନର ବୀରଭୂମି ଗୋହିରା ଟିକିରି ଗୋଡିମାଟିରେ ଏବେ ବି ବୀରତ୍ୱର ରକ୍ତ ସଦ୍ୟ ଜବାକୁସୁମର ଆଭା ସୃଷ୍ଟିକରେ ।

ଯଜ୍ଞପୁର ଉପକଣ୍ଠେ ରହିଛି ବିସ୍ତୃତ
ଗୋହିରା-ଟିକିରି ନାମେ ବିଶାଳ ପ୍ରାନ୍ତର
ତରୁଶୂନ୍ୟ ମରୁପ୍ରାୟ, ଦିଗନ୍ତ ବିସ୍ତାରୀ
ନିରାଟ ନିର୍ଜନ ପଦା, ନୀରବତା ସହ
କରେ ଯହିଁ ରାଜପଣ ମହାନିସ୍ତବ୍ଧତା
ପ୍ରାଣର ଉଦାସ ଗୀତି, ଗାଇ ଦିନରାତି
ଗେଙ୍ଗୁଟି ଗେଙ୍ଗୁଟିଗର୍ଭା, ବୈତରଣୀ କନ୍ୟା
କରୁଛି ମୁଖର ସେହି ଅମୁଖରତାକୁ
ହେଲା ଭେଟ ପରସ୍ପରେ ସେ ମହାପ୍ରାନ୍ତରେ
ଉତ୍କଳ ଯବନ ବେନି ମହାବାହିନୀର
ହେଲା ତହିଁ ଉଭୟର ଶିବିର ସ୍ଥାପିତ
ଦିଶିଲା ପ୍ରାନ୍ତର ନର ସାଗର ସଦୃଶ ।

(ମୁକୁନ୍ଦଦେବ– ଚିନ୍ତାମଣି ମହାନ୍ତି)

ଗଜପତି ମୁକୁନ୍ଦଦେବ ଜଣେ କୀର୍ତ୍ତିଶାଳୀ ବିଦ୍ୟୋତ୍ସାହୀ ନରପତି ଥିଲେ । ସେ ବଙ୍ଗ ବିଜେତା ହୋଇ ଗଙ୍ଗାନଦୀ କୂଳରେ 'ତ୍ରିବେଣୀ ଘାଟ' ବା 'ମୁକୁନ୍ଦ ଘାଟ' ନିର୍ମାଣ କରିଯାଇଛନ୍ତି । ଦିନ ଥିଲା ଯେତେବେଳେ ଓଡ଼ିଶାର ପ୍ରଜାନୁରଞ୍ଜକ ଗଜପତିମାନେ ରାଜ୍ୟ ଜୟଜନିତ ବିପୁଳ ଧନରେ ନିଜ ପାଇଁ ପ୍ରାସାଦ କି ଅଟ୍ଟାଳିକା ନିର୍ମାଣ ନକରି ରାଜ୍ୟରେ ଶହ ଶହ ଦୁର୍ଗ, ମନ୍ଦିର, ଦେବାଳୟ ପ୍ରତିଷ୍ଠା କରିଯାଇଥିଲେ, ଯେଉଁଗୁଡିକ ଥିଲା ଆମ ସଂସ୍କୃତିର ପୀଠସ୍ଥଳୀ ।

ଶ୍ରୀ ମୁକୁନ୍ଦଦେବ ଉତ୍କଳ ଖଣ୍ଡର
ଶେଷ ସ୍ୱାଧୀନ ସମ୍ରାଟ
ବଙ୍ଗେ ଯାହାଙ୍କର ମୂର୍ତ୍ତିମତୀ କୀର୍ତ୍ତି
ବିରାଜେ ତ୍ରିବେଣୀଘାଟ ।

(କବିଶେଖର ଚିନ୍ତାମଣି)

ମୁକୁନ୍ଦଦେବ ଗଙ୍ଗାକୂଳରେ ଅବସ୍ଥାନ କରୁଥିବା ବେଳେ ଦେଶ ଜାତିଦ୍ରୋହୀମାନଙ୍କ ଷଡଯନ୍ତ୍ରରେ ଓଡ଼ିଶାର ଶୌର୍ଯ୍ୟ, ବୀର୍ଯ୍ୟ, ସୌନ୍ଦର୍ଯ୍ୟ ସବୁ ଧୂଳିସାତ୍ ହୋଇଗଲା । ଏହିଭଳି ଜଣେ ବ୍ୟକ୍ତି ଥିଲେ ସାରଙ୍ଗଗଡର କ୍ଷୁଦ୍ର ସାମନ୍ତ ନୃପତି ଉତ୍କଳର ଦୁଷ୍ଟଗ୍ରହ

ରାମଚନ୍ଦ୍ର ଭଞ୍ଜ । ମୁକୁନ୍ଦଦେବଙ୍କ ଅନୁପସ୍ଥିତିରେ ସେ ନିଜକୁ ଗଜପତି ବୋଲି ଘୋଷଣା କରି ଉତ୍କଳ କୂଳ ପାଂଶୁଳ ଶିଖି-ମନାଇକୁ ବଙ୍ଗ ନବାବ ସୁଲେମାନଙ୍କ ଦରବାରକୁ ପ୍ରେରଣ ପୂର୍ବକ ଯବନ-ସେନାପତି କଳାପାହାଡକୁ ଉତ୍କଳ ଆକ୍ରମଣ ପାଇଁ ପାଛୋଟି ଆଣିଲେ । ପରିସ୍ଥିତି ଏପରି ହେଲା ଯେ ଗୌଡ ଅବରୋଧ ଭଙ୍ଗ କରି ମୁକୁନ୍ଦଦେବ ପ୍ରତ୍ୟାବର୍ତ୍ତନ କଲେ । ଦୁଇବାହିନୀର ଭେଟ ହେଲା ଓଡ଼ିଶାର ହଳଦୀଘାଟ ଗୋହିରା ଟିକିରି ରଣକ୍ଷେତ୍ରରେ । ଯବନବାହିନୀ ଲଢି ଲଢି ଅଣନିଃଶ୍ୱାସୀ ହୋଇଗଲେ । ଏତିକିବେଳେ ପଶ୍ଚାତ୍‌ଭାଗରୁ ରାମଚନ୍ଦ୍ର ଦେବଙ୍କ ଛୁରିକା ଘାତରେ ମୁକୁନ୍ଦଦେବ ଭୂପତିତ ହେଲେ । ସଂଜ ନଇଁ ଆସିଥିଲା ଗୋହିରା କ୍ଷେତ୍ରରେ । ପଶ୍ଚିମରେ ବୁଡି ଯାଉଥିଲେ ସୂର୍ଯ୍ୟ । ଗେଙ୍ଗୁଟି ନଈରେ ଶୋକର ଉଚ୍ଛୁଳା ବନ୍ୟା । ରାଣୀ ପୋଖରୀ, ଆଲାମ ଚାନ୍ଦ ପୋଖରୀ, ସେନାପତିଆ ପୋଖରୀ ଏହାର ମୂକସାକ୍ଷୀ ।

ଏହିଭଳି ଭାବରେ ଉତ୍କଳ କଳଙ୍କ, ଅମଙ୍ଗଳ ଧୂମକେତୁ, ନିର୍ଲ୍ଲଜ ଚାଟୁକାରମାନଙ୍କ ଚକ୍ରାନ୍ତରେ ଓଡ଼ିଶାର ଦୁର୍ବାର ରଣସଂଗ୍ରାମ ବିପର୍ଯ୍ୟସ୍ତ ହେଲା। ଗୌରବ ଗରିମାମୟୀ, ଆବଙ୍ଗ-ତୈଲଙ୍ଗ ମହୀ ଉତ୍କଳର ସ୍ୱାଧୀନତା ସ୍ରୋତ ଥମିଗଲା । ଉତ୍କଳର ବିଡମ୍ବିତ ଇତିହାସର ରଣାଙ୍ଗନ ଗୋହିରା ଟିକିରି ମଶାଣି ଭୂଇଁରେ ସେଦିନ ବିଳମ୍ବିତ ସନ୍ଧ୍ୟାର ନୀଳପାଂଶୁଳ ପ୍ରହରରେ ଜୁଇର ଶିଖାରେ ଜଳି ଜଳି ନିଃଶେଷ ହୋଇଗଲା ଓଡ଼ିଶାର ଶେଷ ସ୍ୱାଧୀନ ସମ୍ରାଟ ମୁକୁନ୍ଦଦେବଙ୍କ ପାର୍ଥିବ ଶରୀର । ଓଡ଼ିଶା ଇତିହାସରେ ଗ୍ଲାନିକର ଅନୁଭୂତି ଏହାଠାରୁ ବଳି କ'ଣ ଆଉ ଥାଇପାରେ ? କବିବର ରାଧାନାଥ ରାୟଙ୍କ ଭାଷାରେ ରତ୍ନପ୍ରସୂ ଦେବଭୂମି ଉତ୍କଳରୁ ସବୁ ଦେବତାମାନେ ଉଭେଇ ଗଲେ କି ?

ନିମିଷେ ଉତ୍ତର-କାଳେ ଗଲେ ସର୍ବେ ଦେବତା ଉଭି
ବାଜିବାରୁ ଯହିଁ କଳାପାହାଡର ରଣଦୁନ୍ଦୁଭି ।
ନିମିଷେ ସରିଲା, ଯହିଁ ଉତ୍କଳର ଗୌରବ ଆଶା
ଲକ୍ଷ ବୀର ରକ୍ତେ, ଉତ୍କଳର ହେଲା ଭାଗ୍ୟ ମୀମାଂସା ।

'ଓଡ଼ିଶା ଇତିହାସ'ରେ ଡଃ ହରେକୃଷ୍ଣ ମହତାବ ଲେଖିଲେ- 'ରାମଚନ୍ଦ୍ର ଭଞ୍ଜ ଓ ମୁକୁନ୍ଦ ହରିଚନ୍ଦନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧରେ ମୁକୁନ୍ଦଦେବ ନିହତ ହେଲେ । ମୁକୁନ୍ଦଦେବ ଓ ରାମଚନ୍ଦ୍ର ଭଞ୍ଜ ଏକାଦିନେ ନିହତ ହେଲେ ବୋଲି ବର୍ଣ୍ଣିତ ଅଛି । ଇତିହାସ ପକ୍ଷରେ ପରିତାପର ବିଷୟ ଏହି ଯେ, ମୁକୁନ୍ଦଦେବ ବହିଃଶତ୍ରୁ ଦ୍ୱାରା ନିହତ ନହୋଇ ଘର ଶତ୍ରୁ ହାତରେ ପ୍ରାଣ ହରାଇଲେ । ବାଲେଶ୍ୱର ଜିଲ୍ଲା ଧାମନଗର ଥାନାର ଗେଙ୍ଗୁଟି ନଈକୂଳରେ ଗୋହିରା ଟିକିରିଠାରେ ହରିଚନ୍ଦନ ନିହତ ହୋଇଥିଲେ ବୋଲି ଜନଶ୍ରୁତି ଅଛି ।' ଗୋହିରା ଟିକିରି ଯୁଦ୍ଧରେ ଆଫଗାନ ସୈନ୍ୟଙ୍କ ଦ୍ୱାରା ରାମଚନ୍ଦ୍ର ଭଞ୍ଜ ଓ ସୁଲେମାନ୍ କରାନୀଙ୍କ ଦ୍ୱାରା ରଘୁ ଭଞ୍ଜ ନିହତ ହୋଇଥିଲେ । ଅପରପକ୍ଷେ 'ଆକବର ନାମା'ର ଏକ ବର୍ଣ୍ଣନା ଅନୁଯାୟୀ ମୁକୁନ୍ଦଦେବ ଓ ଦୁର୍ଗା ଭଞ୍ଜଙ୍କ ମଧ୍ୟରେ ଏକ ଯୁଦ୍ଧ ହୋଇଥିଲା । ଏଥିରେ ଦୁର୍ଗା ଭଞ୍ଜ ମୁକୁନ୍ଦଦେବଙ୍କୁ ହତ୍ୟା କରିଥିଲେ । କାଳିଦାସଙ୍କ 'ରଘୁବଂଶ' କାବ୍ୟରେ ବର୍ଣ୍ଣିତ ଅଛି ଯେ ଉତ୍କଳ ଭୂଖଣ୍ଡ ୪ର୍ଥ-୫ମ ଶତାବ୍ଦୀରେ ଦକ୍ଷିଣରେ କପିଶା (ମେଦିନୀପୁର ଜିଲ୍ଲାର କସାଇ ବୋଲି ଅନୁମିତ) ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଗଜପତି ଶାସନ କାଳରେ ଓଡ଼ିଶା-ବଙ୍ଗଳା ବିବାଦ ମଝିରେ ମଝିରେ ସୃଷ୍ଟି ହେଉଥିଲା । ପ୍ରତାପରୁଦ୍ରଙ୍କ ସମୟରେ ଏହା ବୃଦ୍ଧିପ୍ରାପ୍ତ ହୋଇ ମୁକୁନ୍ଦଦେବଙ୍କ ସମୟକୁ ଭୟାନକ ରୂପ ନେଲା, ଯାହାର ପରିଣତି ହେଲା ଗୋହିରା ଟିକିରି ଯୁଦ୍ଧ ।

ମୁକୁନ୍ଦ ଦେବ (ଖ୍ରୀ ୧୫୬୦-୧୫୬୮)ଙ୍କ ୧ମ ପାଞ୍ଜି ମତେ- 'ଏ ଉତ୍ତାରେ ଚାଳୁକି ବଂଶ ରାଜା ହେଲେ । ମୁକୁନ୍ଦ ହରିଚନ୍ଦନ ରାଜା ହୋଇଲେ । ଅ ୧୦ ଙ୍କେ ଗଙ୍ଗା କଟକାଇ କଲେ । ଡିଲି ପାତିସା ସଙ୍ଗେ ପୀରତି ହୋଇଲେ । ଗଉଡ ପାତିସା ସଙ୍ଗେ ଅପ୍ରୀତି ହୋଇଲେ । ଗଙ୍ଗାରେ ନାବକେଳି କଲେ । ଏହା ଗୌଡ ପାତିସା ବାରତା ପାଇଲେ । ବହୁତ ସନ୍ୟ ଘେନି ସେ ବାହି ଅଇଲେ । ତାହା ଜାଣି ରାଜା କୋଟସାମୀ ଗଡ ଆବୋରି ରହିଲେ । ଅନେକ ଫଉଜ ଦୁଇଆଡୁ ମଲେ । କେହି କାହାକୁ ଘୁଞ୍ଚାଇ ନପାରିଲେ । ଏମନ୍ତେ କଳାପାହାଡ ପଛିମ ଆଉ କାଂସାବାଂସା ଦେଇ କଟକ ଆସି ବେଢିଲେ । କଟକେ ଥିଲେ ଯେ କୋନି ସାଆନ୍ତ ସିଂହାର । ଏ ବହୁତ ଯୁଝ କଲେ । ସେ ଯୁଝରେ ପଡିଲେ । ଯେତେବେଳେ ଶ୍ରୀନବରେ ଜୂର କଲେ । ରାମଚନ୍ଦ୍ର ଭଞ୍ଜ ଯେ ସାରଙ୍ଗଗଡ ଧରିଥିଲେ ସେ ପୁଣି ଗୋଳରେ ରାଜା ହୋଇଲେ । କୋଟସାମୀ ଗଡରେ ଯେ ମୁକୁନ୍ଦଦେବ ଥିଲେ । ଶ୍ରୀନବର ଜୂର ଯିବାରେ ସେ ବାରତା ପାଇଲେ । ରାମଚନ୍ଦ୍ର ଭଞ୍ଜ ରାଜା ହୋଇବା ବାରତା ପାଇଲେ । ସେ ପାତିସାକୁ ପଇଠ ପଶିଲେ । ରାମଚନ୍ଦ୍ର ଦେବ ଯେ ସାରଙ୍ଗଗଡ ଥିଲେ ମୁକୁନ୍ଦଦେବ ତହିଁ ଯୁଝ କଲେ । ତହୁଁ ସେ ଦୁଇ ରାଜା ଯୁଝ କଲେ । ମୁକୁନ୍ଦଦେବଙ୍କୁ ରାମଚନ୍ଦ୍ର ଦେବେ ମାଇଲେ । ଏ ଦୁଇ ରାଜା ଏକାଦିନେ ମଲେ ।'

ଗୋହିରା ଟିକିରିକୁ ଏକ ସଂକୀର୍ଣ୍ଣ ଭୂଖଣ୍ଡ ବୋଲି ମନେ କରାଯିବା ଉଚିତ ହେବ ନାହିଁ । ଲୋକମତରେ ମା' ବିରଜା

ଦେବୀ ବିନ୍ଧ୍ୟଗିରି ଗୁହାରେ ପୂଜା ପାଉଥିବା ସମୟରେ ସେ ନାରୀ ଦେହରେ ଏଠାରେ ବିଚରଣ କରୁଥିବାର କିମ୍ବଦନ୍ତୀ ଅଛି । ମା'ଙ୍କର ଏକନିଷ୍ଠ ଭକ୍ତ ଜଣେ ଶବର ପିଲା ନାମ ଅନୁସାରେ ଉକ୍ତ ସ୍ଥାନର ନାମ ଗୋହିରା ଟିକିରି ହୋଇଅଛି । ଇତିହାସ ମତେ ଗୋହିରା ଟିକିରି ସ୍ଥାନ ନିରୂପଣ ପ୍ରଧାନ । ଖ୍ରୀ ୭୩୬ରେ ଭୌମକରମାନଙ୍କ ରାଜଧାନୀ ଥିଲା ଗୁହଦେବ ପାଟକ ବା ଗୁହେଶ୍ୱରପାଟକ । ହରେକୃଷ୍ଣ ମହତାବ ଏବଂ ବିନାୟକ ମିଶ୍ର ପ୍ରଭୃତି ଭୌମକରମାନଙ୍କ ତାମ୍ରପଟାକୁ ବିଶ୍ଳେଷଣ କରି ଗୁହଦେବ ପାଟକକୁ ଯାଜପୁର ବୋଲି ଚିହ୍ନିତ କରିଛନ୍ତି । କିନ୍ତୁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ଗୋହିରି ଟିକିରି– 'ଗୁହିରା' ଏବଂ ଟିକର ଶବ୍ଦର ସମଷ୍ଟି, ଯେମିତିକି ନୃସିଂହ–ଟିକିରି, ପଞ୍ଚ–ଟିକିରି, ବ୍ରହ୍ମ–ଟିକିରି ଇତ୍ୟାଦି । 'ଟିକର' ଶବ୍ଦକୁ 'ସ୍ତୂପ' ଅର୍ଥରେ ଗ୍ରହଣ କରାଗଲେ ଅବଶିଷ୍ଟ ଶବ୍ଦ 'ଗୁହିରା'– ଗୁହେଶ୍ୱର ଶବ୍ଦର ଅପଭ୍ରଂଶ ବୋଲି ଧରାଯାଇପାରେ । ବାସ୍ତବରେ ଗୋହିରା ଟିକିରି ପଞ୍ଚକୋଶ ବିରଜାକ୍ଷେତ୍ର ଅନ୍ତର୍ଗତ ବୌଦ୍ଧପୀଠ ଖଡିପଦାର ନିକଟବର୍ତ୍ତୀ । ପଣ୍ଡିତ ନୀଳମଣି ମିଶ୍ରଙ୍କ ମତରେ– 'ଖୁବ୍ ସମ୍ଭବତଃ ଯାଜପୁର ଓ ତା'ର ଆଖପାଖ ଅଞ୍ଚଳ ଅର୍ଥାତ୍ କଟକ ଜିଲ୍ଲାର ରତ୍ନଗିରିଠାରୁ ଆରମ୍ଭ କରି ବାଲେଶ୍ୱର ଜିଲ୍ଲାର ଧମ୍ମନଗର (ଧାମନଗର) ପର୍ଯ୍ୟନ୍ତ ଏକଦା ବୌଦ୍ଧକ୍ଷେତ୍ରରୂପେ ସୁପରିଚିତ ଥିଲା । ଖ୍ରୀଷ୍ଟୀୟ ୩ୟ– ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧଧର୍ମର ବିକାଶ ଏହି କ୍ଷେତ୍ରରେ ସମ୍ଭବ ହୋଇଥିଲା ।' ଖଡିପଦାରେ ବୁଦ୍ଧ ଏବଂ ଅବଲୋକିତେଶ୍ୱରଙ୍କ ବିଶାଳ ପ୍ରତିମୂର୍ତ୍ତି ବିଦ୍ୟମାନ । ସୁବିସ୍ତୃତ ଗୋହିରା ଟିକିରି ପ୍ରାନ୍ତରର ପ୍ରତ୍ନତାତ୍ତ୍ୱିକ ଅବଶେଷରୁ ଆବିଷ୍କୃତ ୮ମ–୯ମ ଶତାବ୍ଦୀର ତାନ୍ତ୍ରିକ ବୌଦ୍ଧ ମତବାଦ ହନୁମାନ ମୂର୍ତ୍ତି କଳ୍ପଦ୍ରୁମ ସଦୃଶ ବିଶାଳକାୟ ଅର୍ଜୁନ ବୃକ୍ଷ ମୂଳରେ ଅକ୍ଷୁଣ୍ଣ ଅବସ୍ଥାରେ ଦଣ୍ଡାୟମାନ । ଖଡିପଦା ଗ୍ରାମର ପଦ୍ମପାଣି ବିଗ୍ରହ ରାଜ୍ୟ ସଂଗ୍ରହାଳୟରେ ସ୍ଥାନ ପାଇଛି । ଏହିସବୁ ପ୍ରତିମୂର୍ତ୍ତି ସୋଲାମପୁର ମହାବିହାର କୀର୍ତ୍ତିରାଜିର ଅଂଶବିଶେଷ ବୋଲି ଅନୁମିତ ହୁଏ ।

ଏଥିରୁ ସୂଚିତ ହୁଏ ଯେ ଭୌମକର ବଂଶର ରାଜଧାନୀ ଗୁହଦ୍ୱାରପାଟକ ସହ ଗୋହିରା ଟିକିରିର ସାମଞ୍ଜସ୍ୟ ଅଛି । ସୋଲାମପୁରର ଇଟାନିର୍ମିତ ଦୁର୍ଗ କପିଳେନ୍ଦ୍ର ଦେବ (ଖ୍ରୀ: ୧୪୩୫–୭୦)ଙ୍କ ଦ୍ୱାରା ନିର୍ମିତ ହୋଇଥିବାର ଅନୁମିତ ହୁଏ । ତେଣୁ ଗଜପତି ଶାସନ ସମୟର ସୋଲାମପୁର ଦୁର୍ଗକୁ ଗୋହିରା ଟିକିରର ଅଂଶବିଶେଷ ବୋଲି ଧରି ନିଆଯାଇପାରେ । ଧାମନଗରର ପୁରାତନ ନାମ ଧମ୍ମନଗର ବା ଧର୍ମନଗର । କାରଣ ଜଗନ୍ନାଥ ସଡକ ପାର୍ଶ୍ୱସ୍ଥ ଏହି ସ୍ଥାନରେ ଅତୀତରେ ଗୋଟିଏ ହିନ୍ଦୁ ମଠ ବା ପାନ୍ଥନିବାସ ଥିଲା, ଯେଉଁଠାରେ ତୀର୍ଥଯାତ୍ରୀମାନଙ୍କୁ ଛତ୍ରଦାନ କରାଯାଉଥିଲା । ସମ୍ଭବତଃ ସେହି ଧାର୍ମିକ କେନ୍ଦ୍ରଟି ଗୋହିରା ଟିକିରି ଦୁର୍ଗର ଅଂଶବିଶେଷ ।

ବୈତରଣୀର ଦକ୍ଷିଣ–ପଶ୍ଚିମ ସୀମାରେ ଅବସ୍ଥିତ ରାଜଧାନୀ ନଗର ଗୋହିରା ଟିକିରି ଏକଦା ଧର୍ମସଂସ୍କୃତିର ପ୍ରଧାନ କେନ୍ଦ୍ର ଥିଲା । ସତ୍ୟଯୁଗରେ ବ୍ରହ୍ମା ଏଠାରେ ଯଜ୍ଞ କରି ନିକଟରେ ଥିବା ସେନାପତିଆ ପୋଖରୀକୁ ଯଜ୍ଞକୁଣ୍ଡ ରୂପେ ବ୍ୟବହାର କରିଥିବାର ପ୍ରବାଦ ଅଛି । ତ୍ରେତୟା ଯୁଗରେ ଭଗବାନ ଶ୍ରୀରାମଚନ୍ଦ୍ର ଏଠାକୁ ଆସିଥିବାର କିମ୍ବଦନ୍ତୀ ପ୍ରଚଳିତ । ଏହିଭଳି ଏକ ପୀଠରେ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ସାମ୍ରାଜ୍ୟର ଭାଗ୍ୟରବି ଚିରଦିନ ଲାଗି ଅସ୍ତମିତ ହୋଇଯାଇଥିଲା । 'ଉତ୍କଳ– ଗୌରବ–ଗିରି–ଉର୍ଜସ୍ୱଳ ଚୂଡା' ସୁଶ୍ଳୋକ ମୁକୁନ୍ଦଦେବଙ୍କ ନିହତ ପରେ କବିଶେଖର ଚିନ୍ତାମଣି ବ୍ୟକ୍ତ କଲେ–

ଯେ ସୌଭାଗ୍ୟ–ସୂର୍ଯ୍ୟ ତା'ର ଅସ୍ତହେଲା ଆଜି
ଗୋହିରା ପ୍ରାନ୍ତରେ, ଆଉ ନ ଉଇଁବ ସେହୁ ।
ଏ ଶୋକର ମହାସାକ୍ଷୀ ଏ ଗୋହିରା କ୍ଷେତ୍ର,
ଏ ଗେଙ୍ଗୁଟୀ– (ବୈତରଣୀ ପ୍ରାଣର ତନୁଜା)
ବିଷର୍ଣ୍ଣ ଐତିହାସିକ ଏ ଶୋକ ସ୍ମୃତିର
ବହିବେ ଏ ମହାସ୍ମୃତି କାଳେ କାଳେ ବେନି ।

'ତ୍ରିବେଣୀ ତଟେ' କବିତାରେ ଜାତୀୟବାଦୀ କବି ପଦ୍ମଚରଣ ପଟ୍ଟନାୟକ ଲେଖିଲେ–

ମୁକୁନ୍ଦର ବାହୁବଳ ଧର୍ମ କର୍ମେ ଶୁଭମତି
ପ୍ରାଣପଣେ ଦେଶସେବା ଅଦମ୍ୟ ସ୍ୱଜାତି–ପ୍ରୀତି ।
ଗୋହିରାର ପୁଣ୍ୟକ୍ଷେତ୍ରେ ଦେବା ପାଇଁ ଆତ୍ମବଳି
ବୀରଦର୍ପେ ନାଚି ନାଚି କିପରି ପଡିଲା ଢଳି ।
କିପରି ସେ ଦେଶ ଜିଣି ଆସିଲା ତ୍ରିବେଣୀ ତୀରେ
କିପରି ତା ଥାଟ ଛାୟା ପଡିଲା ଏ ନଦୀ ନୀରେ ।
କିପରି ସେ ପୋତି ଥିଲା ଜୟସ୍ତମ୍ଭ ଏହି ଦେଶେ
କିପରି ହର୍ଯ୍ୟକ୍ଷ ନେତ୍ରେ ବୁଲୁଥିଲା ବୀରବେଶେ ।

ଗୋହିରା ଟିକିରି ସ୍ଥାନର ମାହାତ୍ମ୍ୟ ବିଷୟରେ ପଞ୍ଚସଖାଙ୍କ ଦ୍ୱାରା ଲିଖିତ ଭବିଷ୍ୟମାଳିକାମାନଙ୍କରେ ବର୍ଣ୍ଣନା କରାଯାଇଛି । ଯଶୋବନ୍ତ ଗୋସାଇଁଙ୍କ ଭବିଷ୍ୟ ଟୀକାରେ ଯାଜପୁର କଥା ଉଲ୍ଲେଖ କରାଯାଇ କୁହାଯାଇଛି ଯେ ସେଠାରେ ଯବନ ବଳ ଜଗି ରହିଥିବେ । ଯାଜପୁର ନିକଟସ୍ଥ ଗୋହିରା ଟିକିରି ଯୁଦ୍ଧରେ ଓଡ଼ିଶା

ତା'ର ସ୍ୱାଧୀନତା ହରାଇଥିଲା । ପରେ ଯବନମାନେ ସମଗ୍ର ଓଡ଼ିଶା ଅଧିକାର କରି ନେଇଥିଲେ ଯାହାର ଏହିପରି ବର୍ଣ୍ଣନା ଦିଆଯାଇଛି ।

ରଷିକୋଇଲାରୁ ଯେ ସୁବର୍ଣ୍ଣରେଖା ନଈ
ରହିବେ ଦନୁଜ ବଳ କଳଣା ନଯାଇ
ରକତ ନଦୀ ବହିବ ଗୋହିରା ଟିକରା
ରାଜାମାନେ ବିନା ଯୁଦ୍ଧେ ଯାଉଥିବେ ମାରା
ଲହରୀ ଘେରିଲା ପ୍ରାୟେ ରହିବେ ଯବନ
ଲୁହାଘାତେ ଅଗ୍ନି ଯେ ଉଠିବ ହୁତାଶନ ।

'ଅଚ୍ୟୁତାନନ୍ଦ ମାଳିକା'ରେ ଦର୍ଶାଯାଇଛି–

ଟାକରା ଗୋହିରୀ ଯୁଦ୍ଧକୁ ପ୍ରଭୁ ହେବେ ବାହାର
ପାମର ଅଚ୍ୟୁତ କହଇ ଦୋଷ ନଧର ମୋର ।

ପୁନଶ୍ଚ 'କଳିଯୁଗ ଭବିଷ୍ୟ ମାଳିକା'ରେ ଉଲ୍ଲେଖ ଅଛି–

ଟାକରା ଗୋହିରୀ ଠାବରେ ଯାଇ
ଯୁଦ୍ଧ କରିବେ ଆପେ ମହାମାୟୀ ।

'ଓଡ଼ିଶାର କିମ୍ବଦନ୍ତୀ' ପୁସ୍ତକରେ ଡକ୍ଟର ପ୍ରସନ୍ନ କୁମାର ମିଶ୍ର ଲେଖିଛନ୍ତି–

'ଗୋହିରା ଟିକିରି ଏକ ସଂଗ୍ରାମ ଭୂମି । ଏଇଠାରେ ଓଡ଼ିଶାର ରାଜା ମୁକୁନ୍ଦଦେବଙ୍କ ସହିତ ଆଫ୍‌ଗାନ୍ କଳାପାହାଡର ଯୁଦ୍ଧ ହୋଇଥିଲା । ଯୁଦ୍ଧରେ ଗଜପତି ମୁକୁନ୍ଦଦେବ ନିହତ ହୋଇଥିଲେ । ଗୋହିରା ଟିକିରି ଯୁଦ୍ଧକ୍ଷେତ୍ର ଭିତରେ ଗୋଟିଏ ବଡ ପୁଷ୍କରିଣୀ ଅଛି । ଏଇ ପୋଖରୀରେ ସମସ୍ତ ଉତ୍କଳୀୟ ସେନାବାହିନୀ ପରାସ୍ତ ଓ ମୃତାହତ ହୋଇ ବୁଡିଯାଇଛନ୍ତି । ଉତ୍କଳୀୟ ସୈନ୍ୟମାନେ ବର୍ତ୍ତମାନ ମଧ୍ୟ ସେଠାରେ ବୁଡିକି ରହିଛନ୍ତି । ପ୍ରତିଦିନ ଅର୍ଦ୍ଧରାତ୍ରରେ ସେମାନେ ଯୁଦ୍ଧବାଦ୍ୟ ବଜାଉଛନ୍ତି । ବୀରତୂର୍ଯ୍ୟର ଶବ୍ଦରେ ଏବେ ମଧ୍ୟ ଗଗନପବନ ମୁଖରିତ କରୁଛନ୍ତି । ମଝିରେ ମଝିରେ ଶବ୍ଦ ଓ ସୈନିକମାନଙ୍କ ଗଗନଭେଦୀ ଉଦ୍‌ବୋଧନ ଧ୍ୱନି ଶୁଣାଯାଏ– 'ଉଠ', 'ମାର', 'ହାଣ', 'ଜିତ' । ଏଇ ସୈନିକମାନେ ଦିନେ ସଶରୀରେ ଉଠିବେ ଓ ଓଡ଼ିଶା ସପକ୍ଷରେ ଯୁଦ୍ଧ କରିବେ ।'

ସେଇ ପଡିଆର ନାମ ଗୋହିରା ଟିକିରି ଯେଉଁଠି ସ୍ୱାଧୀନ ଉତ୍କଳର ଶେଷ ଯବନିକା ନଇଁ ଆସିଥିଲା । ସେଇ ନଦୀଟିର ନାମ ଗେଙ୍ଗୁଟି ଯେଉଁଠି ବିଷର୍ଣ୍ଣ ଇତିହାସର ତପ୍ତଅଶ୍ରୁ ଝରିଗଲା ଭରିଦେଇ ଦୀର୍ଘଶ୍ୱାସ । ଗୋହିରା ଟିକିରି ରଣାଙ୍ଗନ ଶୌର୍ଯ୍ୟର ମର୍ଯ୍ୟାଦା ନେଇ ଆମ ଇତିହାସକୁ ଉନ୍ନତ କରିଛି, ବୀରତ୍ୱର ଅମରଗାଥା ଗାନ କରି ବୀରଭୂଇଁ ଓଡ଼ିଶାକୁ ଉନ୍ମାଦିତ କରିଛି । ଓଡ଼ିଆ ଜାତିର ପରାଜୟର ସ୍ମୃତିସ୍ଥଳ– ଭାଗ୍ୟ ନିର୍ଦ୍ଧାରଣ ଯୁଦ୍ଧକ୍ଷେତ୍ର– ଉତ୍କଳର ମହାଶ୍ମଶାନ ଗୋହିରା ଟିକିରିକୁ ଦେଖି ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆ ଲୁହ ଝରାଏ । ୧୫୬୮ରୁ ୧୯୩୬ କେତେଦୂର ସତରେ ! କାନ୍ତକବି ଲକ୍ଷ୍ମୀକାନ୍ତଙ୍କ କାଳଜୟୀ ସୂକ୍ତି–

ଗୋହିରା ଟିକିରି, ଗୋହିରା ଟିକିରି
ଓଡ଼ିଆ ଜାତିର ମଶାଣି ଭୂଇଁ
ଓଡ଼ିଆ ପୁଅ ମୁଁ ପବିତ୍ର ହୋଇବି
ତୋର ପବିତ୍ର ମାଟିକି ଛୁଇଁ ।
ଓଡ଼ିଆ ଜାତିର ଗଉରବ ଗାଥା
ହୋଇଅଛି ଲେଖା ରକତ ଗାରେ
ତୋହରି ଛାତିରେ ଗୋହିରା ଟିକିରି
ଲିଭିନାହିଁ ଖରା ବରଷା ଧାରେ ।

ପ୍ରାଧ୍ୟାପକ
ଚାନ୍ଦବାଲି ମହାବିଦ୍ୟାଳୟ
ଚାନ୍ଦବାଲି, ଜିଲ୍ଲା– ଭଦ୍ରକ



# ଓଡ଼ିଶାରେ ଶିବୋପାସନାର ସାଂସ୍କୃତିକ ଐତିହ୍ୟ ଏବଂ ପରମ୍ପରା

ଜେନାମଣୀ ଲକ୍ଷ୍ମୀକାନ୍ତ

ଓଡ଼ିଶାରେ ଲିଙ୍ଗପୂଜା ଖ୍ରୀଷ୍ଟିୟ ଚତୁର୍ଥ ଶତାବ୍ଦୀରୁ ଲୋକପ୍ରିୟ ହେବା ଉତ୍ତାରୁ କାଳକ୍ରମେ ଶିବ ମନ୍ଦିରମାନ ନିର୍ମିତ ହୋଇ ଲିଙ୍ଗ ସ୍ଥାପିତ ଓ ପୂଜିତ ହେଲା । ଅନେକ ସ୍ଥାନରେ ବୃକ୍ଷମୂଳେ ମୁକ୍ତ ପ୍ରାଙ୍ଗଣରେ, ନଦୀ ଓ ପୁଷ୍କରିଣୀ ତଟରେ ଲିଙ୍ଗ ପୂଜା ସମାହିତ ହେଉଥିଲା । ଓଡ଼ିଶାରେ ବାଲୁକା ଲିଙ୍ଗ ଉପାସନା ପ୍ରଚଳିତ । ପଞ୍ଚମ ଶତାବ୍ଦୀରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ଲିଙ୍ଗପୂଜା ନିମିତ୍ତ ଅନେକ ମନ୍ଦିର ନିର୍ମାଣ ହୋଇଛି । ଯଥା– ଭୁବନେଶ୍ୱର ଭାସ୍କରେଶ୍ୱର (୫ମ ଖ୍ରୀ.) ପର୍ଶୁରାମେଶ୍ୱର, ସ୍ୱର୍ଣ୍ଣକାଳେଶ୍ୱର, ଭରତେଶ୍ୱର, ଶତ୍ରୁଘ୍ନେଶ୍ୱର, ଲକ୍ଷ୍ମଣେଶ୍ୱର, ଶିଶିରେଶ୍ୱର, ମାର୍କଣ୍ଡେଶ୍ୱର, ବଡ଼ମ୍ବାର ସିଂହନାଥ, ବକ୍ରକୋଟର ଲିଙ୍ଗେଶ୍ୱର, ବୈଦ୍ୟନାଥର କୁଶଳେଶ୍ୱର, ଶୁକ୍ଲେଶ୍ୱରର ମାରିକେଶ୍ୱର, ବାଙ୍କୀ ବୈଦେଶ୍ୱର (୭ମ ଓ ୮ମ ଶତାବ୍ଦୀ) ଭୁବନେଶ୍ୱର, ମୁକ୍ତେଶ୍ୱର, ଯାଜପୁରର ହଂସଶ୍ୱର, ମାର୍ଧବଶ୍ୱର, କଳାହାଣ୍ଡିର ଧବଳେଶ୍ୱର, ମୋହଗିରି ଶିବମନ୍ଦିର, ପଟିଆର କଳେଶ୍ୱର, ପ୍ରାଚୀ ଉପତ୍ୟକାର ସୋମେଶ୍ୱର, ଅମରେଶ୍ୱର, ଉଗ୍ରେଶ୍ୱର, ନାସିକେଶ୍ୱର ଲତାହରଣର ଶିବମନ୍ଦିର (୮ମ/୯ମ), ଭୁବନେଶ୍ୱରର ରାଜାରାଣୀ, ଖିଚିଂର ଚନ୍ଦ୍ରଶେଖର ଏବଂ ନୀଳକଣ୍ଠେଶ୍ୱର (୯ମ/୧୦ମ ଶତାବ୍ଦୀ), ଭୁବନେଶ୍ୱରର ବ୍ରହ୍ମେଶ୍ୱର, ଲିଙ୍ଗରାଜ, ମେଘେଶ୍ୱର, କେଦାରେଶ୍ୱର, ଅଲଣାହାଟର କୁଣ୍ଡେଶ୍ୱର (୧୦ମ/୧୧ଶ ଶତାବ୍ଦୀ) ନିଆଳୀର ଶୋଭନେଶ୍ୱର (୧୨ଶ ଶତାବ୍ଦୀ) ଭୁବନେଶ୍ୱରର (୧୨ଶ ଶତାବ୍ଦୀ) ପୁରୀ ଚାଟେଶ୍ୱର (୧୩ଶ ଶତାବ୍ଦୀ) ସାରଳା ଦାସ ଏହି ମନ୍ଦିରଗୁଡ଼ିକର ବର୍ଣ୍ଣନା ତାଙ୍କ ସାରଳା ମହାଭାରତରେ ପ୍ରକାଶ କରିଛନ୍ତି । ମହାଭାରତରୁ ଗୋକର୍ଣ୍ଣ ତୀର୍ଥ, କପାଳମୋଚନ, ରାମେଶ୍ୱର, ମଣିକର୍ଣ୍ଣିକା ତୀର୍ଥ, କର୍ମେଶ୍ୱର, ମହେଶ୍ୱର, ଗଗନେଶ୍ୱର, ଚଣ୍ଡକୋବର, କଳିଙ୍ଗେଶ୍ୱର, ଯୋଗେଶ୍ୱର, ଢେଙ୍କାନାଳର କପିଳାସ, ପୁରୀର ଲୋକନାଥ, ଯମେଶ୍ୱର, ଚିତ୍ରୋତ୍ପଳା ଆଦିର ପରିଚୟ ରହିଅଛି । ଏହା ଉତ୍କଳର ଶୈବ ଧର୍ମ ଓ ଉପାସନାର ପ୍ରାଚୀନତା ପ୍ରତିପାଦିତ କରିଥାଏ ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ଥିବା ସେହି ମଙ୍ଗଳମୟଙ୍କ କ୍ଷେତ୍ର ମଧ୍ୟରେ ଆରଡିଠାରେ ପୂଜିତ ଆଖଣ୍ଡଳମଣିଙ୍କର ଲିଙ୍ଗପୂଜା ସର୍ବଜନବିଦିତ । ଓଡ଼ିଶାରେ ଶୈବ ଧର୍ମର ପ୍ରସାର ଘଟିଥିବାବେଳେ ସେହି ସମୟରେ ଶୈବ ସଂସ୍କୃତିର ଅନୁରୂପ ଅଭ୍ୟୁଦୟ ହୋଇ ଥିବାର ମନେହୁଏ । ପୁରାଣ ପୃଷ୍ଠାରୁ ଜଣାଯାଏ ଯେ ଗୌତମ ଋଷିଙ୍କ ଦ୍ୱାରା ଅଭିଶପ୍ତ ହୋଇ ଦେବରାଜ ଇନ୍ଦ୍ର ମର୍ତ୍ତ୍ୟଧାମରେ ଶାପମୁକ୍ତି ପାଇଁ ଆଖଣ୍ଡଳମଣିଙ୍କୁ ତପସ୍ୟା କରିଥିଲେ । ଦେବ ଦେବ ମହାଦେବ ଇନ୍ଦ୍ରଙ୍କ ତପସ୍ୟାରେ ମୁଗ୍ଧ ହୋଇ ଆଖଣ୍ଡଳମଣି ରୂପରେ ଆରଡି ଧାମରେ ଆବିର୍ଭାବ ହୋଇଥିଲେ । ଇନ୍ଦ୍ରଙ୍କୁ ସେ ଶାପମୁକ୍ତ କରିବା ପରେ ହିଁ ଇନ୍ଦ୍ର ସ୍ୱର୍ଗକୁ ଗମନ କରିଥିଲେ । ପୁଣ୍ୟତୋୟା ବୈତରଣୀ ଓ ସାଳନ୍ଦୀର ସଂଯୋଗ ସ୍ଥଳକୁ ୧ କିଲୋମିଟର ଦୂର ଏବଂ ଭଦ୍ରକରୁ ମାତ୍ର ୩୮ କିଲୋମିଟର ଦୂରରେ ଏହି ପୀଠ ଅବସ୍ଥିତ ।

ଶିବଭକ୍ତଙ୍କର ମନସ୍କାମନା ପୂରଣ କରିଥିବା ଅନ୍ୟତମ ଲୋକପ୍ରିୟ ଶୈବପୀଠ ହେଉଛି ବାବା ଧବଳେଶ୍ୱର । କଟକ ଜିଲ୍ଲାର ଆଠଗଡ ବ୍ଲକରେ ଏହି ପୀଠ ଅବସ୍ଥିତ । ପୁରାତନ ସାହିତ୍ୟ ରଚନା ହେବା ପୂର୍ବରୁ ଏହିପୀଠ ପ୍ରତିଷ୍ଠା ହୋଇଛି ବୋଲି ଲୋକମତ ଅଛି ।

ମହା ଶିବରାତ୍ରି ଓ ଜାଗର ପର୍ବ ଓଡ଼ିଶାରେ ମହାସମାରୋହରେ ପାଳିତ ହୋଇଥାଏ । ଭୁବନେଶ୍ୱରର ଲିଙ୍ଗରାଜ, ବୈତାଳଶ୍ୱର ମନ୍ଦିର, ଶିଶିରେଶ୍ୱର ମନ୍ଦିର, ପର୍ଶୁରାମେଶ୍ୱର ମନ୍ଦିର, ବଡ଼ମ୍ବାର ସିଂହନାଥ, ଭୋଗରାଇର

ଚନ୍ଦନେଶ୍ୱର, ଶରଣକୂଳର ଲଡୁବାବା ଓ ଓଡଗାଁର ଦୂତିକେଶ୍ୱର ଶୈବପୀଠଗୁଡିକରେ ଏହି ଶିବରାତ୍ରିରେ ଲକ୍ଷ ଲକ୍ଷ ଭକ୍ତଙ୍କ ସମାଗମ ହେଉଥିବା ବେଳେ ପୁରପଲ୍ଲୀରେ ପ୍ରତ୍ୟେକ ଗ୍ରାମରେ ଥିବା ଶୈବ ମନ୍ଦିରରେ ମଧ୍ଯ ଭକ୍ତମାନଙ୍କର ଭିଡ ହୁଏ । ଉତ୍କଳୀୟ ଶିବପୂଜାର ପଟାନ୍ତର ନାହିଁ । ଓଡ଼ିଶାରେ ଶିବଙ୍କର ବହୁ ପୁରାତନ ମନ୍ଦିର କାଳକ୍ରମେ ସ୍ଥାପିତ ହୋଇଛି । ଏଠାରେ ମନସ୍କାମନା ପୂର୍ଣ୍ଣ ଆଶାରେ ଶିବରାତ୍ରି ଦିନ ଲକ୍ଷ ଲକ୍ଷ ଭକ୍ତ ଶିବଙ୍କ ଦର୍ଶନ କରି ନିଜକୁ ଧନ୍ୟ ମନେ କରନ୍ତି । ଓଡ଼ିଶାର ସମୁଦ୍ର ତଟବର୍ତ୍ତୀ ସ୍ଥାନଠାରୁ ଗିରି ଶିଖର ପର୍ଯ୍ୟନ୍ତ ଶତାଧିକ ଶିବ ମନ୍ଦିର ରହିଛି । କିଛି ନଦୀ ତଟରେ ତ କିଛି ପାହାଡ ଶିଖରରେ, କିଛି ମନ୍ଦିର ଗାଁଗଣ୍ଡା ମଧ୍ୟରେ ତ କିଛି ନିଘଞ୍ଚ ଅରଣ୍ୟ ମଧ୍ୟରେ । ସତ୍ୟ ଶିବ ସୁନ୍ଦରର ଗମ୍ଭୀର ବାତାବରଣ ସୃଷ୍ଟି କରିବା ସହିତ ଭକ୍ତିଭାବ ଜଗାଇବାରେ ଉତ୍ସବ ମୁଖର ଥାଏ ଶିବରାତ୍ରି ଦିନ ସବୁ ଶୈବ ମନ୍ଦିର। ପାରଳାଖେମୁଣ୍ଡିଠାରୁ ପ୍ରାୟ ୭୦ କିଲୋମିଟର ଦୂରରେ ଅବସ୍ଥିତ ମହେନ୍ଦ୍ରଗିରିରେ ମହେନ୍ଦ୍ରେଶ୍ୱର ପ୍ରାୟ ୫ ହଜାର ବର୍ଷ ପୁରୁଣା ଶୈବପୀଠ ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ଏଠାରେ ମହେଶ୍ୱରଙ୍କ ମୁଖ୍ୟ ଶିବଲିଙ୍ଗ ରହିଥିବାବେଳେ ପାର୍ଶ୍ୱରେ ୧୨ଟି ଶିବଲିଙ୍ଗ ରହିଛି । ମହାଭାରତ କିମ୍ବଦନ୍ତୀ ଅନୁସାରେ ପଞ୍ଚୁପାଣ୍ଡବଙ୍କ ଅଜ୍ଞାତ ବନବାସ ଏହିଠାରେ କିଛି ସମୟ କଟିଥିଲା । ପଞ୍ଚୁପାଣ୍ଡବ ଏବଂ ମାତା କୁନ୍ତୀଙ୍କ ନାମରେ ଅନେକ ସ୍ମାରକୀ ମନ୍ଦିର ଏଠାରେ ଅଛି । ଯୁଗପୁରୁଷ ପର୍ଶୁରାମଙ୍କ ନିବାସ ସ୍ଥଳୀଭାବେ ଏହାର ଏକ ଭିନ୍ନ ପରିଚୟ ମଧ୍ୟ ଲୋକମୁଖରେ ବଂଚି ରହିଛି ଅଦ୍ୟାବଧି ।

ତୃତୀୟ ଅନଙ୍ଗଭୀମ ଦେବ ତାଙ୍କ ରାଜୁତି ସମୟରେ ସମ୍ବଲପୁର ଜିଲ୍ଲା ମାନେଶ୍ୱର ବ୍ଲକ୍ ହୁମା ଗ୍ରାମରେ ବିମଳେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଲୋକକଥା ଅଛି ଯେ, କୁମାରୀ ଗ୍ରାମର ଦିବାକର ହୋତାଙ୍କ ଗାଈ ଚରିବାକୁ ଆସି ବିମଳେଶ୍ୱରଙ୍କ ଲିଙ୍ଗରେ କ୍ଷୀର ସ୍ନାନ କରାଉଥିଲେ । ରାଜା ଏହି ବିଷୟ ଜାଣିବା ପରେ ଏକ ବକ୍ର ମନ୍ଦିର ନିର୍ମାଣ କରିଥିଲେ । ମନ୍ଦିର ଗର୍ଭରେ ଶିବଲିଙ୍ଗ ଓ ତମ୍ବାନାଗ ଉପରେ ସୂର୍ଯ୍ୟକିରଣ ପଡିବା ଉଦ୍ଦେଶ୍ୟରେ ମନ୍ଦିରକୁ ବକ୍ର ଭାବରେ ତୋଳାଯାଇଥିବା ପ୍ରକାଶ । ଆଦିବାସୀ କୌରା ସମ୍ପ୍ରଦାୟ ଦ୍ୱାରା ପୂଜା ପାଇ ଆସୁଥିବା ରାୟଗଡା ଜିଲ୍ଲା ଗୁଡାରୀ ବ୍ଲକ୍ ଅନ୍ତର୍ଗତ ମୀନା ଝୋଲଠାରେ ବଂଶଧାରା, ଫଳଫଳିଆ ଏବଂ ଚାଉଳଥୁଆ ନଦୀର ତ୍ରିବେଣୀ ସଙ୍ଗମରେ ପ୍ରଖ୍ୟାତ ମୀନକେତନେଶ୍ୱର ମନ୍ଦିର ଅବସ୍ଥିତ । କଥିତ ଅଛି, ଶିବ ଏଠାରେ ମୀନ ରୂପରେ ଅବତୀର୍ଣ୍ଣ ହୋଇଥିବାରୁ ମୀନକେତନ ନାମରେ ପୂଜା ପାଉଛନ୍ତି । ପ୍ରଭୁ ରାମଚନ୍ଦ୍ର ବନବାସ କାଳରେ ମଧ୍ୟ ଏଠାରେ ଅବସ୍ଥାନ କରିଥିଲେ ବୋଲି ଜନଶ୍ରୁତି ରହିଛି ।

ପୁରୀର ଲୋକନାଥ ମନ୍ଦିରକୁ ଦଶମ ଶତାବ୍ଦୀରେ ସୋମବଂଶର ରାଜା ଉଦ୍ଦ୍ୟୃତ କେଶରୀ ବା ଆଲୁଚୁଳ କେଶରୀ ନିର୍ମାଣ କରିଥିଲେ । ଲୋକନାଥ ସ୍ୱୟଂ ଜଗନ୍ନାଥଙ୍କର ଅଙ୍ଗ ଓ ଭଣ୍ଡାର ରକ୍ଷକ ଏବଂ ପରାକ୍ରମୀ ମହାଦେବ ରୂପେ ପ୍ରଖ୍ୟାତ । ବାଲେଶ୍ୱର ଜିଲ୍ଲାର ନୀଳଗିରି ଅନ୍ତର୍ଗତ ଶ୍ୟାମସୁନ୍ଦରପୁର ପଞ୍ଚାୟତରେ ପଞ୍ଚଲିଙ୍ଗେଶ୍ୱର ମନ୍ଦିର ଅବସ୍ଥିତ । ଏଠାରେ ୫ଟି ଲିଙ୍ଗ ଏକତ୍ର ପୂଜା ପାଉଛନ୍ତି । ପ୍ରତିବେଶୀ ରାଜ୍ୟ ପଶ୍ଚିମବଙ୍ଗ, ବିହାର ଓ ଝାଡଖଣ୍ଡ ଅଞ୍ଚଳରୁ ବହୁ ଶ୍ରଦ୍ଧାଳୁ ପ୍ରତିବର୍ଷ ଏଠାକୁ ଜାଗର ପର୍ବ ସମୟରେ ଆସିଥାଆନ୍ତି ।

କୋରାପୁଟର ଗୁପ୍ତେଶ୍ୱର । ରାମଗିରି ପର୍ବତମାଳାର ଅଂଶବିଶେଷ ୫୦୦ ଫୁଟ୍ ଉଚ୍ଚତା ବିଶିଷ୍ଟ ଚୂନା ପାହାଡର ଏକ ଗୁମ୍ଫା ଭିତରେ ଗୁପ୍ତ ଭାବରେ ଗୁପ୍ତେଶ୍ୱର ପୂଜା ପାଉଛନ୍ତି । ଏହି ଶିବଲିଙ୍ଗର ଉଚ୍ଚତା ୬ଫୁଟ୍ ଓ ଗୋଲେଇ ୧୦ ଫୁଟ୍ । ଗୁମ୍ଫା ମଧ୍ୟକୁ ଯିବାକୁ ହେଲେ ୧୦୮ ପାହାଡ ଚଢ଼ିବାକୁ ହୁଏ । କପିଳାସ ପୀଠରେ ଶ୍ରୀ ଶ୍ରୀ ଚନ୍ଦ୍ରଶେଖର ଜୀଉଙ୍କ ମନ୍ଦିର ୧୨୪୬ ମସିହା ଏପ୍ରିଲ୍ ମାସ ୩୦ ତାରିଖରେ ନିର୍ମିତ ହୋଇଥିଲା । ଢେଙ୍କାନାଳ ଜିଲ୍ଲା ସଦର ମହକୁମାଠାରୁ ୨୫ କିଲୋମିଟର ଦୂରରେ ଏହି ପୀଠ ଅବସ୍ଥିତ । ଏହି ପୀଠକୁ ଯିବା ପାଇଁ ୫ କିଲୋମିଟର ବ୍ୟାପୀ ୧୨ଟି ରାସ୍ତା ଅଛି । ୧୩୫୨ ପାହାଚ ଚଢିଗଲେ ଶ୍ରୀଶ୍ରୀଚନ୍ଦ୍ରଶେଖର ମହାଦେବଙ୍କ ଦର୍ଶନ କରିହୁଏ । କିମ୍ବଦନ୍ତୀ ଅଛି, ରାବଣ କୈଳାସ ପର୍ବତକୁ ଟେକି ନେଇ ଯାଉଥିବା ବେଳେ ମହାଦେବଙ୍କ କ୍ରୋଧ ଯୋଗୁଁ ଏହାର କିଛି ଅଂଶ ଏଠାରେ ପଡିଥିଲା ।

ଓଡ଼ିଶାରେ ଶୈବଧର୍ମ ଓ ଶିବୋପାସନା ପୁରାଣ ଏବଂ 'ପଦ୍ମପୁରାଣ' ମତରେ ଶ୍ରୀକ୍ଷେତ୍ରରେ ପ୍ରଚଳନ କରାଯାଇଥିବାର କୁହାଯାଇଥାଏ । ହର ଓ ହରିଙ୍କ କୌଣସି ପ୍ରଭେଦ ନଥିବାରୁ କେତେକ ସ୍ଥଳରେ ଉଭୟଙ୍କୁ ମିଶାଇ ଏକତ୍ର କରି ପୂଜା କରାଯାଇଥାଏ । 'ବିଷ୍ଣୁପୁରାଣ'ରେ ଭଗବାନ ନିଜକୁ ନୀଳକଣ୍ଠଙ୍କଠାରୁ ଅଭିନ୍ନ ବୋଲି ବ୍ୟକ୍ତ କରିଛନ୍ତି । ସପ୍ତମ ଶତାବ୍ଦୀରୁ ଫୁଲବାଣୀରେ ଶିବ ଓ ବିଷ୍ଣୁଙ୍କୁ ଏକତ୍ର କରି ମନ୍ଦିରରେ ପୂଜା କରାଯାଇଅଛି । ପୁରାଣ, ଇତିହାସ ଓ ସମୟ ଏହାର ମୂକସାକ୍ଷୀ । ସମୟ ପରିବର୍ତ୍ତନର ପ୍ରବର୍ତ୍ତନ । ଏହା ଅସ୍ୱୀକାର କରିବାର ନୁହଁ । ହର ଓ ହରିଙ୍କୁ ପୂଜା କରୁଥିବା ଲୋକ ସମୂହ ଯଥାକ୍ରମେ ଶିବ ଓ

ବିଷ୍ଣୁଙ୍କର ପ୍ରାଧାନ୍ୟ ବିସ୍ତାର କରିବାର ପ୍ରୟାସୀ ହୋଇ ସେମାନଙ୍କର ସମ୍ବନ୍ଧରେ ପୁରାଣଗୁଡିକୁ ରଚନା କରି ଲାଗିଲେ । କାଳକ୍ରମେ ଦୁଇ ସମ୍ପ୍ରଦାୟର ମିଳନ ହେବାରୁ ସେମାନେ ପୁନଶ୍ଚ ହରିହର ପୂଜାରେ ଲିପ୍ତ ହୋଇଥିଲେ । ଏହାର ଜ୍ୱଳନ୍ତ ଉଦାହରଣ ଆମ୍ଭେମାନେ ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରରେ ଦେଖିବାକୁ ପାଉ । ମନ୍ଦିର ବ୍ୟତୀତ ଶିବଙ୍କୁ ଶ୍ମଶାନ, ଗୃହ ଓ ପର୍ବତରେ ପୂଜା କରାଯାଇଥାଏ । ଏଭଳି ଦୃଷ୍ଟାନ୍ତ ଓଡ଼ିଶାରେ ଭରି ରହିଛି ।

ମହାଦେବ ଶିବଙ୍କର ମହିମା ଅପାର । ସେହି ଦୃଷ୍ଟିରୁ ଶିବରାତ୍ରୀର ମହିମା ମଧ୍ୟ ସର୍ବଜନ ବିଦିତ । ଶିବ ପଞ୍ଚାକ୍ଷର ମନ୍ତ୍ର ଉଚ୍ଚାରଣ ସହିତ ଶିବରାତ୍ର ପାଳନ କଲେ ସାତ ଜନ୍ମର ପାପତାପରୁ ମଣିଷ ଉଦ୍ଧାର ପାଇଥାଏ ବୋଲି ଜନ ବିଶ୍ୱାସ ରହିଛି । ସ୍କନ୍ଦ ପୁରାଣ ଅନୁସାରେ ୪ଟି ଶିବରାତ୍ରୀ ଯଥା: ପ୍ରଥମଟି ହେଉଛି ନିତ୍ୟ ବା ସବୁରାତି ଶିବରାତ୍ରି, ଦ୍ୱିତୀୟଟି ଶିବରାତ୍ରୀ କୃଷ୍ଣପକ୍ଷ ଚତୁର୍ଦ୍ଦଶୀରେ, ତୃତୀୟଟି ଶିବରାତ୍ରୀ ମାଘ ମାସର ପ୍ରଥମ ୧୩ଦିନ ଓ ଚତୁର୍ଦ୍ଦଶୀ ଦିନ ସାରା ରାତି ଏହା ପାଳନ କରାଯାଇଥାଏ । ଶେଷ ଶିବରାତ୍ରୀ ମାଘ ମାସ ଚତୁର୍ଦ୍ଦଶୀ ତିଥିରେ ପାଳନ କରାଯାଇଥାଏ । ଏହା ମହା ଶିବରାତ୍ରି ନାମରେ ମଧ୍ୟ ନାମିତ ।

### ଆମେ ସମସ୍ତେ ଶିବମୟ ଓ ଶିବ ସ୍ୱରୂପ

ଏହା ହେଉଛି ଉତ୍କଳୀୟ ଉତ୍ସବ ସଂସ୍କୃତିରେ ଶିବୋପାସନାର ଚେତନା ଓ ଅବଧାରଣା। ଆମେ ସମସ୍ତେ ଶିବମୟ ଓ ଶିବ ସ୍ୱରୂପ । ଏହି ତଥ୍ୟକୁ ହୃଦୟରେ ଗଭୀର ଭାବେ ହୃଦୟଙ୍ଗମ କରିବା ପାଇଁ 'ମହାଶିବରାତ୍ରି' ହେଉଛି ଜାଗରଣର ରାତ୍ରି, ଉଜାଗରର ମାହେନ୍ଦ୍ର ମୁହୂର୍ତ୍ତ । ପରମଯୋଗୀ ପରମେଶ୍ୱର ଯୋଗନିଦ୍ରାରେ ବା ଯୋଗସମାଧିରେ ଧ୍ୟାନସ୍ଥ ହୋଇ ମନ୍ଦମନ୍ଦ ହସି ନିଜର ସୃଷ୍ଟି ସର୍ଜନାକୁ ଅବଲୋକନ କରି ପ୍ରସନ୍ନ ଚିତ୍ତତା ପ୍ରଦର୍ଶନ କରୁଥିବା ବେଳେ ଆମେ କାହିଁକି ଜନ୍ମ-ଜରା-ମରଣ ଉଭୟ ବ୍ୟାକୁଳିତ ଓ ଆକୁଳିତ ହୋଇ ବିଷାଦଗ୍ରସ୍ତ ହେବା ? ନିଜ ସୃଷ୍ଟିର ଉଦ୍ଦେଶ୍ୟ ଜାଣି ଆତ୍ମାର ପରମଗତି ନିମନ୍ତେ ଚେଷ୍ଟା କରିବା । ଶ୍ରୀ ଶିବନାମକୁ ଅହର୍ନିଶ ଜପ କରି ବିବେକାନୁମୋଦିତ କର୍ମ କରିଯିବା । ନୂଆ ଫୁଲଟିଏ ପରି ସବୁ ମୁହୂର୍ତ୍ତରେ ସବୁ ସକାଳେ ଫୁଟିବା, ହସିବା ଓ ବାସିବା । ଯେତେ ପାରିବା ପରର ଉପକାର କରିଯିବା । ଜନ୍ମଚକ୍ରର ପ୍ରଖର ସ୍ରୋତରେ ନିଜକୁ ଲକ୍ଷ୍ୟହୀନ ଭାବରେ ଭସାଇ ନଦେଇ ନିଜ ଜନ୍ମକୁ ସାର୍ଥକ କରିବା । ଭକ୍ତିପ୍ଳୁତ ଶୈବଚେତନା ପ୍ରତ୍ୟେକ ଶ୍ରଦ୍ଧାଳୁକୁ ଯେପରି ଅନୁରଣିତ ଓ ଅଭିମଂତ୍ରିତ କରିଥାଏ ଶିବରାତ୍ରି । ପ୍ରଳୟ-ସୃଷ୍ଟି-ସ୍ଥିତି ହିଁ 'ଶିବ' । ଶିବ ଶୁଭବର୍ଣ୍ଣ, ତିଶୂଳଧାରୀ ଓ ବୃଷଭ ବାହନ । ପ୍ରଳୟ ବା ଜ୍ଞାନର ପ୍ରତୀକ ଧର୍ମ ଉପରେ ଶିବତତ୍ତ୍ୱ ପ୍ରତିଷ୍ଠିତ । ଭବସାଗରରୁ ତରିବା ପାଇଁ ଶିବ ହିଁ ଏକମାତ୍ର ନାବିକ ଓ ନାବ । ତ୍ରାହିମାଂ ଶିବମ୍-ତ୍ରାହିମାଂ ଶିବଂ-ତ୍ରାହିମାଂ ହରଭାଷିତଂ ।

### ଦିବାୟ ଦେବାୟ ଓଁ ନମଃ ଶିବାୟ

ଶିବୋପାସନାର ଏକ ଭିନ୍ନ ମହତ୍ତ୍ୱ ଓ ମହକ ରହିଛି ଯେଉଁଥି ପାଇଁ ପ୍ରତି ଶ୍ରଦ୍ଧାଳୁ ସେଥିଯୋଗୁଁ ଯେ ସତ୍ୟ, ଶିବ ଓ ସୁନ୍ଦରକୁ ଉପଲବ୍ଧ କରିବାକୁ ଚାହେଁ ଏବଂ ନିଜେ ମଧ୍ୟ ସତ୍ୟ, ମଙ୍ଗଳ ଓ ସୁନ୍ଦରକୁ ନିଜ ଜୀବନରେ ପ୍ରକାଶ କରିବାକୁ ଚାହେଁ, ତାକୁ ସେଥିପାଇଁ ନିଷ୍ଠାପରଭାବେ ସାଧନା କରିବାକୁ ପଡିବ । ଜୀବନର ଅସଂଖ୍ୟ ବସ୍ତୁ ବା ଭାବ ସମ୍ବନ୍ଧ ଜ୍ଞାନ ଅର୍ଜନ କରିବାକୁ ପଡିବ । କିନ୍ତୁ କେବଳ ଜ୍ଞାନୀ ହେଲେ ଚଳିବ ନାହିଁ । ଧ୍ୟାନୀ ହେବାକୁ ମଧ୍ୟ ପଡିବ । ଯେଉଁମାନଙ୍କର ଚିତ୍ତ ସର୍ବଦା ଚଳଚଞ୍ଚଳ, ଯେଉଁମାନଙ୍କ ମନ ପ୍ରାଣ ଶରୀର ଅଜ୍ଞାନବୃତ୍ତ ଏବଂ ଯେଉଁମାନେ ଅନ୍ୟକୁ ଓ ନିଜକୁ ପ୍ରତାରଣା କରିଚାଲିଛନ୍ତି, ସେମାନେ କେବେ ବି ଯଥାର୍ଥ ସତ୍ୟ, ମଙ୍ଗଳ ଓ ଯଥାର୍ଥ ସୁନ୍ଦରକୁ ବୁଝି ପାରିବେ ନାହିଁ କି ଧରି ପାରିବେ ନାହିଁ । ନିଷ୍ଠା, ଆନ୍ତରିକତା, ସରଳତା ଓ ଶୁଦ୍ଧତା ନ ରହିଲେ କେହି ଅସତ୍ୟ, ଅମଙ୍ଗଳ ଓ ଅସୁନ୍ଦର ଭିତରେ ସତ୍ୟ, ମଙ୍ଗଳ ଓ ସୁନ୍ଦରକୁ ବାଛି ପାରିବେ ନାହିଁ କି ଚିହ୍ନି ପାରିବେ ନାହିଁ ।

ଓଡ଼ିଶାର ଅଧିବାସୀ ଗୋଷ୍ଠୀ ହେଉଛନ୍ତି ଅଷ୍ଟିକ ଗୋଷ୍ଠୀ ଓ ଦ୍ରାବିଡ ଗୋଷ୍ଠୀ । ଓଡ଼ିଶାରେ ଲିଙ୍ଗ ପୂଜାର ପରମ୍ପରା ଅତି ପ୍ରାଚୀନ । ଓଡ଼ିଶାର ନଦୀ ତାର ପୁଷ୍କରିଣୀର ସମୁଦ୍ରକୂଳ, ବନପର୍ବତ, ଗ୍ରାମ ସର୍ବତ୍ର ଶିବଲିଙ୍ଗ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠିତ ହୋଇ ପୂଜିତ ହେଉଥିବାର ପରମ୍ପରା ଅଛି । ପ୍ରାଚୀନ କାଳରେ ଗ୍ରୀସ୍, ମିଶର, ବେବିଲୋନ୍, ପଶ୍ଚିମ ଏସିଆ ବହୁ ଅଞ୍ଚଳରେ ଲିଙ୍ଗ ଉପାସନା ପ୍ରଚଳିତ ଥିଲା । କିନ୍ତୁ ବର୍ତ୍ତମାନ କେବଳ ଭାରତବର୍ଷରେ ଏହା ପ୍ରଚଳିତ । ହିନ୍ଦୁ ଧର୍ମରେ ଲିଙ୍ଗ ପୂଜାର ପ୍ରଚଳନ ଅଛି । ମନ୍ଦିର ବାହାରେ ମଧ୍ୟ ଲିଙ୍ଗ ପୂଜା ପାଇବାରେ କୌଣସି ବାଧା ନାହିଁ । ଆଧୁନିକ ଯୁଗର ଲିଙ୍ଗପୂଜା, ଶିବପୂଜା ଅଟେ । ମହାଦେବ ଶିବ ଯେପରି ଆଶୁତୋଷ, ସେହିପରି ରୁଦ୍ର ଓ ସଂହାରକର୍ତ୍ତା । ତାଙ୍କର ସାମାନ୍ୟ ଅଶାନ୍ତିରେ ସମଗ୍ର ଜଗତ ଧ୍ୱଂସ ହୋଇଯିବ ବୋଲି ସମସ୍ତଙ୍କର ବିଶ୍ୱାସ । ପୂଜାବିଧିରେ ସାମାନ୍ୟ ବ୍ୟତିକ୍ରମ ହେଲେ ଶିବ କୋପ କରନ୍ତି । ଶିବଶମ୍ଭୁ ମଧ୍ୟ ସେହିପରି ତାଙ୍କର ଶକ୍ତିସ୍ୱରୂପା ପାର୍ବତୀ, ଅମ୍ବିକା, ଗୌରୀ ବା ଦୁର୍ଗାଙ୍କ ସହ ଉପାସିତ ହୋଇଥାଆନ୍ତି । ଶିବ ହେଉଛନ୍ତି ଜ୍ୟୋତିର୍ମୟ ସ୍ୱରୂପ ସର୍ବମଣିକ

ବିଧାତା, ଶାନ୍ତ ତଥା ଭୀମ । ଆଶୁତୋଷଙ୍କ କରୁଣା ହେଲେ ଭକ୍ତର ମନକାମନା ଅଚିରେ ସାକାର ହୋଇଥାଏ । ଓଁ ନମଃ ଶିବାୟ, ଏହି ମନ୍ତ୍ର ଉଚ୍ଚାରଣ କଲେ ଯଥେଷ୍ଟ । ସର୍ବ ସୌଭାଗ୍ୟ ଲାଭର ଏହା ହେଉଛି ଅମୋଘ ମନ୍ତ୍ର । ଏହାକୁ ଯେ ପ୍ରତ୍ୟହ ଉଚ୍ଚାରଣ କରିବ, ତା'ର ତୀର୍ଥ ଯିବା ଆବଶ୍ୟକ ନାହିଁ ବୋଲି କୁହାଯାଏ ।

ପ୍ରତ୍ୟେକ ଶିବଭକ୍ତ ଉତ୍କଳୀୟ ଶ୍ରଦ୍ଧାଳୁଙ୍କ ଆତ୍ମପ୍ରତ୍ୟୟ ହେଉଛି: ଶିବପୂଜା ମାଧ୍ୟମରେ ଜୀବନରେ ସମ୍ପୂର୍ଣ୍ଣ ସଫଳତା ଲାଭ ସହଜ ଓ ସୁଲଭ ହୁଏ । ଶିବ ବୈଦ୍ୟନାଥ, ଏଣୁ ତାଙ୍କୁ ଧ୍ୟାନ କଲେ ଭକ୍ତ ରୋଗବ୍ୟାଧିରୁ ମୁକ୍ତି ପାଏ । ଶିବ ଶକ୍ତିମାନ ଓ ମୃତ୍ୟୁଞ୍ଜୟ, ତାଙ୍କ ଉପାସନାରେ ମଣିଷ ଅକାଳ ମୃତ୍ୟୁକୁ ସ୍ୱତଃ ଜୟ କରିଥାଏ । ଓଡ଼ିଶାରେ ଶିବୋପାସକଙ୍କର ଏହା ବଦ୍ଧ ଧାରଣା ଯେ: ଶିବ ସତ୍ୟ, ଶିବ ଓ ସୁନ୍ଦର ବିମୂର୍ତ୍ତ ଚଳନ୍ତି ବିଗ୍ରହ ଏବଂ ସୌଭାଗ୍ୟ ପ୍ରଦାନକାରୀ । ତାଙ୍କ ଶରଣାଗତ ହେଲେ ଧନ ଧାନ୍ୟ ଓ ଭୋଗ ଭାଗ୍ୟମୟ ହୁଏ ଜୀବନଚର୍ଯ୍ୟା ।

ମହାର୍ଘ୍ୟ ମହାଶିବ ରାତ୍ରି (ଜାଗର) ପର୍ବରେ ଉଜାଗର ରହି ଜାଗର ଦିପାଳୀ ଜାଳି ଶିବଙ୍କୁ ପୂଜା କଲେ ମହାପୁଣ୍ୟ ଏବଂ ମନସ୍କାମନା ପୂର୍ଣ୍ଣ ହୁଏ ବୋଲି ଏକ ଗଭୀର ଆସ୍ଥା, ବିଶ୍ୱାସ ଓ ସର୍ବାଦୌକରଣୀର ଆତ୍ମ ପ୍ରତ୍ୟୟ ଏବେ ବି ଅମ୍ଳାନ ଓ ଅତୁଟ ରହିଛି ଜନମାନସରେ । ବାରାନ୍ତରରେ ଯାହା ଉତ୍କଳୀୟ ସଂସ୍କୃତିରେ ଶୈବଧର୍ମ ଓ ଶିବୋପାସନାର ଐତିହ୍ୟ ଏବଂ ମହତ୍ତ୍ୱ କିଭଳି ମହନୀୟ, ତାହା ଦର୍ଶାଇଥାଏ ।

କରଚରଣକୃତଂ ବାକ୍‌କାୟଜଂ କର୍ମଜଂ ବା  
ଶ୍ରବଣ ନୟନଜଂ ବା ମାନସଂ ବାପରାଧମ୍ ।  
ବିହିତମବିହିତଂ ବା ସର୍ବମେତତ୍ କ୍ଷମସ୍ୱ  
ଜୟ ଜୟ କରୁଣାବ୍ଧେ ! ଶ୍ରୀମହାଦେବ ଶମ୍ଭୋ ॥

ପ୍ରଭୋ ! ହାତରେ ହେଉ ବା ପାଦରେ ହେଉ, କଥାରେ ହେଉ ବା କାମରେ ହେଉ, ଶରୀର, ନେତ୍ର ବା ମନଦ୍ୱାରା ହେଉ, ମୁଁ ଯାହାକିଛି ଅପରାଧ କରୁଛି, ତାହା ଯଥାର୍ଥ ହେଉ ବା ଅଯଥାର୍ଥ ହେଉ, ସେ ସମସ୍ତ ଦୋଷକୁ କ୍ଷମା କରିଦିଅନ୍ତୁ । ହେ କରୁଣାସାଗର ! ଶ୍ରୀମହାଦେବ ଶଙ୍କର ! ତୁମର ଜୟ ହେଉ ।

୧୯୨ବି, ସୋନାଲିକା ଏନକ୍ଲେଭ  
(ଗୌରୀ ମନ୍ଦିର ସାମ୍ନା)  
ଲୁଇସ୍ ରୋଡ୍, ଭୁବନେଶ୍ୱର-୧୪



# ଓଡ଼ିଆ ସଂସ୍କୃତିରେ ବାରୁଣୀ ସ୍ନାନ

ସୁରେନ୍ଦ୍ର ନାଥ ପଣ୍ଡା

ଆମ ଦେଶ ଭାରତବର୍ଷରେ ବିଭିନ୍ନ ଅଞ୍ଚଳକୁ ନେଇ ଭିନ୍ନ ଭିନ୍ନ ସଂସ୍କୃତିମାନ ଗଢି ଉଠିଛି । ବିଭିନ୍ନ ଅଞ୍ଚଳର ଭୌଗୋଳିକ ଅବସ୍ଥିତି, ଐତିହାସିକ ସତ୍ୟତା, କିମ୍ୱଦନ୍ତୀ ସର୍ବୋପରି ଲୋକଙ୍କ ସାମାଜିକ ଚଳଣିକୁ ନେଇ ସଂସ୍କୃତି ବୃଦ୍ଧିମନ୍ତ ହୁଏ । ଆମ ରାଜ୍ୟ ଓଡ଼ିଶାରେ ବାର ମାସରେ ତେର ପର୍ବ ଅନୁଷ୍ଠିତ ହୁଏ । ଶ୍ରୀଜଗନ୍ନାଥ ସଂସ୍କୃତି ଏବଂ ଓଡ଼ିଶୀ ନୃତ୍ୟକୁ ନେଇ ଆମ ରାଜ୍ୟ ସାରା ପୃଥିବୀରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ଯେଉଁ ରାଜ୍ୟର ସଂସ୍କୃତି ଯେତିକି ମହାନ୍, ସେହି ରାଜ୍ୟ ସେତିକି ଗରିମାମୟ । ଆମ ଓଡ଼ିଶାରେ ବିଭିନ୍ନ ପ୍ରକାର ପର୍ବପର୍ବାଣି ଓ ଉତ୍ସବାନୁଷ୍ଠାନ ପାଳନ ହେଉଥିବା ବେଳେ ସେସବୁର ଭିତ୍ତିଭୂମି ଏକ ମହାନ୍ ବୈଶିଷ୍ଟ୍ୟକୁ ନେଇ ଗଢି ଉଠିଥାଏ ।

ଆମ ରାଜ୍ୟ ଏକ କୃଷି ପ୍ରଧାନ ରାଜ୍ୟ । ଜନସଂଖ୍ୟାର ପ୍ରାୟ ସତୁରୀ ଭାଗ କୃଷି ଉପରେ ନିର୍ଭର କରନ୍ତି । ଜନସାଧାରଣ ଆଦାୟ ହୋଇଥିବା କୃଷିଜାତ ଦ୍ରବ୍ୟକୁ ପ୍ରଥମେ ଠାକୁରଙ୍କୁ ଅର୍ପଣ କରି ତା'ପରେ ନିଜେ ବ୍ୟବହାର କରନ୍ତି । ଠାକୁର ବିଶ୍ୱାସ ଏବଂ ପରମ୍ପରା ଅଙ୍ଗାଙ୍ଗୀ ଭାବେ ଜଡିତ । ଗୋଟିଏକୁ ଛାଡି ଅନ୍ୟଟିର ଅସ୍ତିତ୍ୱ କଳନା କରାଯାଇ ପାରେନା ।

ଶାରୀରିକ ଶୁଦ୍ଧତା ନିମନ୍ତେ ସୁଷମ ଖାଦ୍ୟର ଯେଉଁଭଳି ଆବଶ୍ୟକତା ରହିଛି, ଶରୀରକୁ ସୁସ୍ଥ ଏବଂ ସବଳ ରଖିବା ନିମନ୍ତେ ତଥା ପ୍ରଭୁଙ୍କ ସାନ୍ନିଧ ଲାଭ ନିମନ୍ତେ ସ୍ନାନର ମଧ୍ୟ ସେହିଭଳି ଆବଶ୍ୟକତା ରହିଛି । ଆମ୍ଭେମାନେ ଆମର ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟରେ ସ୍ନାନକୁ ପ୍ରାଥମିକତା ଦେଇଥାଉ । ଏହାଦ୍ୱାରା ଶରୀର ନିରୋଗ ଏବଂ କାନ୍ତିଯୁକ୍ତ ହୋଇଥାଏ । ଠିକ୍ ସେହିଭଳି ବିଭିନ୍ନ ନିର୍ବାଚିତ ଦିନମାନଙ୍କରେ ନିର୍ବାଚିତ ନଦନଦୀ, ପୁଷ୍କରିଣୀ, ମହୋଦଧିରେ ସ୍ନାନ କଲେ ନିର୍ବାଣ ପ୍ରାପ୍ତି ହୁଏ ବୋଲି ବିଭିନ୍ନ ପୁରାଣ ଶାସ୍ତ୍ରମାନଙ୍କରେ ବର୍ଣ୍ଣନା କରାଯାଇଛି । ଜୀବନର ଚରମ ଏବଂ ପରମ ଲକ୍ଷ୍ୟ ହେଉଛି ନିର୍ବାଣ ପ୍ରାପ୍ତି । ଏଣୁ ତାହାକୁ ପ୍ରାପ୍ତି ନିମନ୍ତେ ଆମ୍ଭେମାନେ ନିର୍ବାଚିତ ସ୍ଥାନମାନଙ୍କରେ ନିର୍ଦ୍ଦିଷ୍ଟ ଦିନମାନଙ୍କରେ ସ୍ନାନ କରିଥାଉ । ସେହିଭଳି ସ୍ନାନମାନଙ୍କ ମଧ୍ୟରୁ ବାରୁଣୀ ସ୍ନାନ ଅନ୍ୟତମ । ଓଡ଼ିଶାର ଋଷିକୁଲ୍ୟା, ବୈତରଣୀ, ମହାନଦୀ ଏବଂ ମହୋଦଧିରେ ସ୍ନାନ କଲେ ପୁଣ୍ୟ ଅର୍ଜନ ହେବା ସଙ୍ଗେ ସଙ୍ଗେ ନିର୍ବାଣ ପ୍ରାପ୍ତିର କିମ୍ୱଦନ୍ତୀ ରହିଛି ।

ଆମ୍ଭେମାନେ ଜାଣୁ ଉତ୍ତର ଭାରତର କୁମ୍ଭମେଳା, ରାଜସ୍ଥାନର ପୁଷ୍କର ମେଳା, ଦକ୍ଷିଣ ଭାରତର କାବେରୀ କୁମ୍ଭମେଳା ଏକ ପ୍ରମୁଖ ସ୍ଥାନ ଅଧିକାର କରିଛି । ଏହା ଦୀର୍ଘ ଦିନ ଯାଏଁ ଚାଲେ । କିନ୍ତୁ ବାରୁଣୀ ସ୍ନାନଯାତ୍ରା ଏକ ନିର୍ଦ୍ଦିଷ୍ଟ ତିଥିରେ ଅନୁଷ୍ଠିତ ହୁଏ ।

ବାରୁଣୀ ସ୍ନାନ ଯାତ୍ରା ଚୈତ୍ର କୃଷ୍ଣ ତ୍ରୟୋଦଶୀ ତିଥି ତଥା ଶତଭିଷା ନକ୍ଷତ୍ରରେ ଅନୁଷ୍ଠିତ ହୁଏ । ଏହା ଯଦି ଶନିବାର କିମ୍ୱା ମଙ୍ଗଳବାର ଦିନ ପଡେ, ତେବେ ଏହାକୁ ମହାବାରୁଣୀ ସ୍ନାନ ବୋଲି କୁହାଯାଏ । ଆମ ଓଡ଼ିଶାର ଆସିକା, ଯାଜପୁର, କେନ୍ଦୁଝର, କଟକ, ପୁରୀ, ପୁରୁଷୋତ୍ତମପୁରଠାରେ ଲକ୍ଷାଧିକ ଲୋକ ରୁଣ୍ଡ ହୋଇ ମହାବାରୁଣୀ ସ୍ନାନ କରନ୍ତି । ବାରୁଣୀ ସ୍ନାନକୁ ଏକ ତୀର୍ଥଭାବେ ଗ୍ରହଣ କରାଯାଇଛି । କାରଣ ସେଠାରେ ପ୍ରଭୁଙ୍କ ସତ୍ତା ଉପଲବ୍ଧ ଏବଂ ସ୍ଥାନଟିର ପବିତ୍ରତା ସ୍ପଷ୍ଟ ବାରି ହୁଏ । ଦେବର୍ଷି ନାରଦ ମଧ୍ୟ 'ଭକ୍ତି ସୂତ୍ରରେ' ଏହା ବର୍ଣ୍ଣନା କରିଛନ୍ତି–

'ତୀର୍ଥ କୁର୍ବନ୍ତି ତୀର୍ଥାନି, ସୁକର୍ମୀ କୁର୍ବନ୍ତି କର୍ମାଣି
ସଚ୍ଛାସ୍ତ୍ରୀ କୁର୍ବନ୍ତି ଶାସ୍ତ୍ରାଣି' ।

ଏଣୁ ତୀର୍ଥ ସ୍ଥାନରେ ନିର୍ବାଚିତ ଦିନମାନଙ୍କରେ ସ୍ନାନ କଲେ ତାମସିକ ଭାବର କ୍ଷୟ ହେବା ସଙ୍ଗେ ସଙ୍ଗେ ମଣିଷ ଦିବ୍ୟଜ୍ଞାନ

ପ୍ରାପ୍ତ ହୁଏ । ଆମ୍ଭେମାନେ ଜାଣୁ ବିବାହ, ବ୍ରତ, ଗୃହ ପ୍ରତିଷ୍ଠା ଏବଂ ହୋମଯଜ୍ଞାଦିରେ ନଦୀ ବାଲି, ଗଙ୍ଗାଜଳ ସେସବୁର କିଭଳି ଭାବେ ଆବଶ୍ୟକତା ରହିଛି । ଠିକ୍ ସେହିଭଳି ଭାବେ ବାରୁଣୀ ସ୍ନାନ ଅବସରରେ ସ୍ନାନ କଲେ ନିର୍ବାଣ ପ୍ରାପ୍ତି ହୁଏ । ବିଭିନ୍ନ ପୁରାଣମାନଙ୍କରେ ଦର୍ଶାଯାଇଛି ଯେ, କାର୍ତ୍ତିକ, ମାଘ, ବୈଶାଖ ଇତ୍ୟାଦି ଦିନର ମାସ ସାରା ସ୍ନାନ କଲେ ପୁଣ୍ୟ ଅର୍ଜନ ହୋଇଥାଏ । ଠିକ୍ ସେହିଭଳି ମାଘ ଶୁକ୍ଳ ସପ୍ତମୀ ତିଥିରେ ସ୍ନାନ କଲେ ମନୁଷ୍ୟ ଆରୋଗ୍ୟ ହେବା ସଙ୍ଗେ ସଙ୍ଗେ ସମସ୍ତ ବିକାରରୁ ମୁକ୍ତି ପାଏ । କୃଷ୍ଣଙ୍କ ପୁତ୍ର ଶାମ୍ବ ଏହାର ଜ୍ୱଳନ୍ତ ପ୍ରମାଣ । ତାଙ୍କ ସ୍ମୃତିକୁ ଚିର ଜାଜ୍ୱଲ୍ୟ କରିବା ନିମନ୍ତେ ଶାମ୍ବଦଶମୀ ମଧ୍ୟ ପାଳନ କରାଯାଏ ।

କିନ୍ତୁ ବାରୁଣୀ ସ୍ନାନ ଆମ ଓଡ଼ିଆ ସଂସ୍କୃତିରେ ଏକ ସ୍ୱତନ୍ତ୍ର ସ୍ଥାନ ଗ୍ରହଣ କରିଛି । ଆମ ଦେଶରେ ଚାରିଧାମ, ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ଯେଭଳିଭାବେ ଲୋକଙ୍କ ଐଶ୍ୱରିକ ଚିନ୍ତାଧାରାକୁ ଦିବ୍ୟଦର୍ଶନ ଯୋଗାଉଛି, ଠିକ୍ ସେହିଭଳି ବାରୁଣୀ ସ୍ନାନ ଜନସାଧାରଣଙ୍କ ମନରେ ଦିବ୍ୟଚେତନା ଭରିବା ସଙ୍ଗେ ସଙ୍ଗେ ନିର୍ବାଣ ପ୍ରାପ୍ତିର ସୁଯୋଗ ସୃଷ୍ଟି କରୁଛି ।

ଋଷିକୁଲ୍ୟା ନଦୀରେ ବାରୁଣୀ ସ୍ନାନ ଆମ ପରମ୍ପରାରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଋଷିକୁଲ୍ୟାର ପବିତ୍ରତା ବିଭିନ୍ନ ପୁରାଣଶାସ୍ତ୍ରମାନଙ୍କରେ ମଧ୍ୟ ବର୍ଣ୍ଣିତ । 'ନୀଳାଦ୍ରି ମହୋଦୟ' ରେ ମଧ୍ୟ ବର୍ଣ୍ଣନା କରି କୁହାଯାଇଛି–

ଋଷିକୁଲ୍ୟା ସମା ସାଦ୍ୟ ଯାବତ୍ ବୈତରଣୀ ନଦୀ
ତାବତ୍ କ୍ଷେତ୍ରସ୍ୟ ମାହାତ୍ମ୍ୟ ବର୍ତ୍ତତେ ମୁନିପୁଙ୍ଗବ ।

ପ୍ରଥମ ମନୁ ସ୍ୱୟମ୍ଭୁବଙ୍କ ଦ୍ୱାରା ଋଷିକୁଲ୍ୟା ସୃଷ୍ଟି ହୋଇଛି । ମନୁ ସ୍ୱୟମ୍ଭୁବ ସତ୍ୟଯୁଗରେ ମୁନି ଏବଂ ଋଷିମାନଙ୍କ ଗହଣରେ ବରୁଣ ଯଜ୍ଞ କରାଇଥିଲେ । ସେହିଦିନ ଥିଲା ଚୈତ୍ର ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଶନିବାର ତଥା ଶତଭିଷା ନକ୍ଷତ୍ର । ସେହି ଶୁଭ ମୁହୂର୍ତ୍ତରେ ଋଷିମାଳ ପର୍ବତସ୍ଥିତ ନିଜ ଆଶ୍ରମଠାରୁ ଋଷିକୁଲ୍ୟା ନଦୀ ଜନ୍ମ ଲାଭ କରିଥିବାରୁ ପ୍ରତିବର୍ଷ ଋଷିକୁଲ୍ୟାର ଜନ୍ମ ନକ୍ଷତ୍ର ଦିବସରେ ବାରୁଣୀ ସ୍ନାନ କରାଯାଏ । ଋଷିକୁଲ୍ୟା ନଦୀ ଯେଉଁଠାରେ ଉତ୍ତରାଭିମୁଖୀ ହୋଇଥାଏ, ସେଠାରେ ସାଧାରଣତଃ ବାରୁଣୀ ବୁଡ ପକାଯାଏ । ଆସିକା ସହର ପବିତ୍ର ଋଷିକୁଲ୍ୟା ଏବଂ ବଡନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ । ଋଷିକୁଲ୍ୟା ଏଠାରେ ଉତ୍ତରାଭିମୁଖୀ । ଏଣୁ ଏଠାରେ ବାରୁଣୀ ବୁଡ ପକାଇବା ନିମନ୍ତେ ଲକ୍ଷ ଲକ୍ଷ ଲୋକ ଗଞ୍ଜାମ, ଗଜପତି, ରାୟଗଡା, କୋରାପୁଟ, ନୟାଗଡ, ଶ୍ରୀକାକୁଲମ ଇତ୍ୟାଦି ଜିଲ୍ଲାମାନଙ୍କରୁ ଆସି ବୁଡ ପକାଇ ପିତୃପୁରୁଷଙ୍କୁ ପିଣ୍ଡ ଦେବା ସଙ୍ଗେ ସଙ୍ଗେ ଶ୍ରୀରାମଙ୍କ ଦ୍ୱାରା ପ୍ରତିଷ୍ଠିତ ପୁତ୍ରଗେଶ୍ୱର ଏବଂ ଭଞ୍ଜ ବଂଶର ଇଷ୍ଟଦେବୀ ତଥା ଆଦିବାସୀଙ୍କ ପ୍ରାଣର ଦେବତା ମା' ଖମ୍ବେଶ୍ୱରୀଙ୍କ ଦର୍ଶନ କରି ପୁଣ୍ୟ ଅର୍ଜନ କରନ୍ତି । ଆଗକାଳରେ ଯାନବାହାନର ବ୍ୟବସ୍ଥା ବ୍ୟାପକ ନଥିଲା । ଏଣୁ ଜନସାଧାରଣ ଚାଲି ଚାଲି କିମ୍ବା ଶଗଡ ଗାଡିରେ ଆସି ବାରୁଣୀ ସ୍ନାନ କରୁଥିଲେ । କିନ୍ତୁ ଆଜିକାଲି ଗମନାଗମନର ବିଶେଷ ସୁବିଧା ହେବା ଯୋଗୁଁ ସେହି ସମସ୍ୟା ଆଉ ରହୁନାହିଁ । ଆସିକାର ବାରୁଣୀ ଯାତ୍ରାକୁ ଶୃଙ୍ଖଳିତ କରିବା ନିମନ୍ତେ ପୁଲିସ ବାହିନୀ, ଓକିଲ ସଂଘ, ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସର୍ବୋପରି ଜନସାଧାରଣଙ୍କ ତରଫରୁ ଅନେକ ବ୍ୟବସ୍ଥା କରାଯାଇଥାଏ । ଏହାର ଗୁରୁତ୍ୱକୁ ଉପଲକ୍ଷି କରି ବିଭିନ୍ନ ସ୍କୁଲ, କଲେଜ ଏବଂ କୋର୍ଟକଚେରୀ ଏଠାରେ ବନ୍ଦ ରହେ ।

ଆସିକା ବାରୁଣୀ ସ୍ନାନର ପ୍ରଚାର ଏବଂ ପ୍ରସାର ହୋଇ ପାରିଲେ କୁମ୍ଭମେଳା ଭଳି ଏହା ଭାରତ ତଥା ଭାରତ ବାହାରର ବହୁ ତୀର୍ଥଯାତ୍ରୀଙ୍କୁ ଆକର୍ଷିତ କରିପାରିଥାନ୍ତା । ଏଣୁ ସମସ୍ତେ ମିଳିମିଶି ବାରୁଣୀ ସ୍ନାନର ମହତ୍ତ୍ୱକୁ ପ୍ରଚାର ଏବଂ ପ୍ରସାର କରିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ମନରେ ଐକ୍ୟଭାବ ବଢାଇ ନିର୍ବାଣ ପ୍ରାପ୍ତିର ସୁଯୋଗ ସୃଷ୍ଟି କରିବା ।

ଆଇନଜୀବୀ, ଆସିକା



# କଳାପାଣିରେ କ୍ରାନ୍ତିକାରୀ

**ବିନୋଦିନୀ ରାଉଳ**

ହଜାର ହଜାର ଭାରତୀୟଙ୍କ ତ୍ୟାଗ, ତିତୀକ୍ଷା ଓ ବଳିଦାନରେ ଆମକୁ ମିଳିଛି ସ୍ୱାଧୀନତା । ସେମାନଙ୍କ ବଳିଦାନ ସାଧାରଣ ନଥିଲା । ସଂଗ୍ରାମକୁ ଦବାଇବାକୁ ଇଂରେଜମାନେ ଖୁବ୍ ନିଷ୍ଠୁର ଓ ଅମାନବୀୟ ବ୍ୟବହାର କରୁଥିଲେ । ସଂଗ୍ରାମୀଙ୍କ ସ୍ୱରକୁ ସବୁଦିନ ବନ୍ଦ କରିଦେବା ପାଇଁ ସେମାନଙ୍କୁ କଳାପାଣି ପଠାଇ ଦେଉଥିଲେ । ସେତେବେଳେ କଳାପାଣିର ନାଁ ଶୁଣିଲେ ସାଧାରଣ ଲୋକ ଭୟରେ କମ୍ପି ଉଠୁଥିଲେ । ମାତ୍ର କଳାପାଣିରେ ବି କେତେକ ସଂଗ୍ରାମୀ ଯେଉଁଳି ସଂଗ୍ରାମର ନିଆଁକୁ ଜଳାଇ ରଖୁଥିଲେ, ତାହା ମାତୃଭୂମି ପ୍ରତି ସେମାନଙ୍କ ଭଲ ପାଇବାକୁ ହିଁ ଦର୍ଶାଇଥାଏ । କଳାପାଣିକୁ ନିର୍ବାସନରେ ଯାଇ ସଂଗ୍ରାମୀମାନେ ସେଠାରେ ପ୍ରତିକୂଳ ପରିସ୍ଥିତିରେ ବଂଚିବାକୁ ସଂଘର୍ଷ କରିବା ସହିତ ଅନ୍ୟମାନଙ୍କ ମନରେ ସ୍ୱାଧୀନତା ଦୀପକୁ ଜଳାଇ ରଖୁଥିଲେ ।

ଇଷ୍ଟ ଇଣ୍ଡିଆ କମ୍ପାନୀ ବହୁ ସ୍ୱାଧୀନତା ସଂଗ୍ରାମୀ ବିଶେଷକରି ଯେଉଁ ସଂଗ୍ରାମୀମାନେ ଅନ୍ୟମାନଙ୍କୁ ଅଧିକ ମାତ୍ରାରେ ପ୍ରଭାବିତ କରୁଥିଲେ ସେମାନଙ୍କୁ ମିଛ ମାମଲାରେ ଫସାଇ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜରେ ଥିବା ସେଲୁଲାର ଜେଲକୁ ପଠାଇ ଦେଉଥିଲେ । ଦେଶ ଭିତରେ ଥିବା ଅନ୍ୟାନ୍ୟ ଜେଲଠାରୁ ଏ ଜେଲ ସ୍ୱତନ୍ତ୍ର । ଆଣ୍ଡାମାନର ଅସ୍ୱାସ୍ଥ୍ୟକର ପରିବେଶ ଓ ଜେଲରେ ଯେଉଁଳି ଅମାନବୀୟ ବ୍ୟବହାର କରାଯାଉଥିଲା, ତାହା ଥିଲା ଲୋମଟାଙ୍କୁରା । ସେଠାକୁ ଯାଉଥିବା କଏଦୀ ଘରକୁ ଫେରିବାର ସମ୍ଭାବନା ନଥିଲା । ଯଦିବା କେହି ଫେରୁଥିଲେ ତାହେଲେ ସେ ନୂଆ ଜୀବନ ପାଉଥିଲେ ବୋଲି କୁହାଯାଉଥିଲା । ସେ ଯମାଳୟରୁ ଫେରିଥିବା କୁହାଯାଉଥିଲା ।

ଆଣ୍ଡାମାନ ଓ ନିକୋବରରେ ଥିବା ସେଲୁଲାର ଜେଲ୍‌ରେ ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ଇଷ୍ଟ ଇଣ୍ଡିଆ କମ୍ପାନୀ କଏଦୀ ଭାବେ ରଖିଥିଲା । ସେହି ସଂଗ୍ରାମୀଙ୍କ ମଧ୍ୟରେ ସର୍ବାଧିକ ଚର୍ଚ୍ଚିତ ଥିଲେ ଦାମୋଦର ବିନାୟକ ସଭରକର । ସେ ସ୍ୱତନ୍ତ୍ର ବୀର ସଭରକର ଭାବେ ଅଧିକ ପରିଚିତ । ସେ ଏକାଧାରାରେ ଥିଲେ ଜଣେ ସଂଗ୍ରାମୀ, କବି, ଲେଖକ ଓ ନାଟ୍ୟକାର । ତାଙ୍କୁ ଦୁଇଟି ମାମଲାରେ ୫୦ ବର୍ଷର କାରାଦଣ୍ଡାଦେଶ ଶୁଣାଇ ଆଜୀବନ କଏଦୀ ଭାବେ ପଠାଯାଇଥିଲା ଆଣ୍ଡାମାନ । ଜୁଲାଇ ୪, ୧୯୧୧ରେ ତାଙ୍କୁ ସେଲୁଲାର ଜେଲ ପଠାଯାଇଥିଲା । ସେ ଆଉ ଘରକୁ ଫେରିବେନି ବୋଲି ସମସ୍ତଙ୍କର ବିଶ୍ୱାସ ଥିଲା । ମାତ୍ର ଜ୍ଞାନୀ, ଗୁଣୀ ସ୍ୱତନ୍ତ୍ର ବୀର ସଭରକର ନିଜ ଅଧିକାର ପାଇଁ ସେଠାରେ ସଂଗ୍ରାମ ଜାରି ରଖି ନିର୍ଦ୍ଧାରିତ ସମୟ ପୂର୍ବରୁ ୧୯୨୧ରେ ସେଠାରୁ ଛାଡ ପାଇଥିଲେ । ନିଜେ ସ୍ୱଦେହରେ ଫେରିବା ସହିତ ଅନ୍ୟ କଏଦୀଙ୍କ ପାଇଁ କିଛି ସୁବିଧା ସୁଯୋଗ ସୃଷ୍ଟି କରିପାରିଥିଲେ ।

୧୮୮୩ ମସିହା ମେ ୨୮ ତାରିଖରେ ମହାରାଷ୍ଟ୍ର, ନାସିକ ନିକଟସ୍ଥ ଭାଗୁର ଗାଁରେ ଦାମୋଦର ଓ ରାଧାବାଈ ସଭରକରଙ୍କ କୋଳମଣ୍ଡନ କରିଥିଲେ ବିନାୟକ । ତାଙ୍କର ଅନ୍ୟ ୨ ଭାଇ ଓ ଜଣେ ଭଉଣୀ ଥିଲେ । ଦୁଇ ଭାଇ ଗଣେଶ ଓ ନାରାୟଣ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଅଳ୍ପ ବୟସରେ ସେ ବାପା ମା'ଙ୍କୁ ହରାଇଥିଲେ । ବଡ଼ ଭାଇ ଗଣେଶଙ୍କ ଉପରେ ଭାଇଭଉଣୀଙ୍କ ରକ୍ଷଣାବେକ୍ଷଣ ଭାର ପଡ଼ିଥିଲା । ଗଣେଶଙ୍କ ଦ୍ୱାରା ଦାମୋଦର ଅନେକ ଭାବେ ପ୍ରଭାବିତ ହୋଇଥିଲେ । ପିଲାଟି ଦିନରୁ ତାଙ୍କ ମନ ଥିଲା ସ୍ୱାଧୀନ ଚେତା । ଦେଶରୁ ଇଂରେଜମାନେ କିପରି ଯିବେ ତାହା ସେ ଚିନ୍ତା କରୁଥିଲେ । କୈଶୋରରେ ସେ ଯୁବକଙ୍କୁ ନେଇ ଗଢ଼ିଥିବା ମିତ୍ର ମେଳା ଗୋଷ୍ଠୀ ମାଧ୍ୟମରେ ଲୋକଙ୍କ ମଧ୍ୟରେ ବିପ୍ଳବୀ ଓ ସ୍ୱାଧୀନତା ମନ୍ତ୍ର ବାଣ୍ଟୁ ଥିଲେ । ୧୯୦୧ରେ ସେ

ଯମୁନାବାଈଙ୍କୁ ବିବାହ କରିଥିଲେ। ପୁନେର ଫର୍ଗୁସନ କଲେଜରେ ପଢିଲା ବେଳେ ସେ ଲାଲ–ବାଲ–ପାଲଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ। ଏହି ସମୟରେ ବିଭିନ୍ନ ଜାତୀୟତାବାଦୀ କାର୍ଯ୍ୟକଳାପରେ ଅଂଶଗ୍ରହଣ କରିଥିଲେ। ଅଭିନବ ଭାରତ ସହିତ ସାମିଲ ହୋଇ ସେ ଏହିଭଳି କାର୍ଯ୍ୟକଳାପରେ ମାତି ଥିବାରୁ ତାଙ୍କୁ କଲେଜରୁ ବାହାର କରିଦିଆଗଲା। ମାତ୍ର ପରେ ପୁଣି ତାଙ୍କୁ କଲେଜରେ ଗ୍ରହଣ କରାଯାଇଥିଲା। ବିଏ ପାସ ପରେ ସ୍କଲାରସିପ ପାଇ ସେ ଇଂଲଣ୍ଡକୁ ଆଇନ୍ ପଢିବାକୁ ଯାଇଥିଲେ। ଲଣ୍ଡନର ଗ୍ରେ'ସ ଇନ ଲ' କଲେଜରେ ପଢୁଥିବା ବେଳେ ସେ ଇଂରେଜଙ୍କ ବିରୋଧରେ ସଂଗ୍ରାମ ଜାରି ରଖିଥିଲେ। ୧୮୫୭ ସିପାହୀ ବିଦ୍ରୋହକୁ ଇଂରେଜ ସରକାର ବିରୋଧରେ ଭାରତର ପ୍ରଥମ ଲଢେଇ ବୋଲି ଉଲ୍ଲେଖ କରି ସେ ଲେଖିଥିବା ପୁସ୍ତକକୁ ଇଂରେଜ ସରକାର ନିଷେଧ କରିଥିଲେ ହେଁ ଜର୍ମାନୀ ଓ ଫ୍ରାନ୍ସର ସହାୟତାରେ ସେ ଏହି ପୁସ୍ତକକୁ ବିପ୍ଳବୀଙ୍କ ନିକଟରେ ପହଞ୍ଚାଇ ପାରିଥିଲେ। ଏହି ସମୟରେ ସେ ଜଣେ ରୁଷ ବିପ୍ଳବୀଙ୍କଠାରୁ ବୋମା ତିଆରି କୌଶଳ ଶିକ୍ଷା କରି ଏହି କୌଶଳକୁ ଅନ୍ୟମାନଙ୍କୁ ଶିଖାଇଥିଲେ। ଏହି କୌଶଳ ଶିକ୍ଷା କରି ମଦନଲାଲ ଧିଙ୍ଗ୍ରା ବ୍ରିଟିଶ ସାଂସଦ ସାର୍ କର୍ଜନ ୱିଲିଙ୍କୁ ହତ୍ୟା କରିଥିଲେ। ଧିଙ୍ଗ୍ରାଙ୍କୁ ଜଣେ ବୀର ଓ ଶହୀଦ୍ ବୋଲି ସଭରକର କହିଥିଲେ। ଏହି ମାମଲାରେ ସଭରକରଙ୍କୁ ୧୯୧୦ ମସିହାରେ ଗିରଫ କରାଯାଇଥିଲା। ସେ ଖସିଯିବାକୁ ଯୋଜନା କରିଥିଲେ ହେଁ ସମ୍ଭବ ହୋଇନଥିଲା ଓ ପୁଣି ଥରେ ଗିରଫ ହୋଇଥିଲେ। ଏହି ମାମଲାର ବିଚାର କରାଯାଇ ତାଙ୍କୁ ୫୦ ବର୍ଷର ଆଜୀବନ କରାଦଣ୍ଡାଦେଶ ଦିଆଯାଇଥିଲା ଓ ଆଣ୍ଡାମାନ ନିକୋବରର ସେଲୁଲାର ଜେଲ୍‌କୁ ପଠାଯାଇଥିଲା, ଯାହା ଭାରତୀୟଙ୍କ ନିକଟରେ କଳାପାଣି ଭାବେ ପରିଚିତ।

ସଭରକରଙ୍କ ସାହସର ପ୍ରକୃତ ପରଖ ହୋଇଥିଲା ସେଲୁଲାର ଜେଲରେ। ସେତେବେଳେ ସେଲୁଲାର ଜେଲ୍ ଭାରତଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ଥିଲା। ସେ ଅଞ୍ଚଳ ଆଦିମ ଅଧିବାସୀଙ୍କ କବଳରେ ରହିଥିଲା। ଜେଲ୍ ଦାୟିତ୍ୱରେ ଥିଲେ ଇଂରେଜ ଅଫିସର ଯେଉଁମାନଙ୍କର କଏଦୀଙ୍କ ପ୍ରତି ସାମାନ୍ୟତମ ଦରଦ ନଥିଲା। ସେମାନେ ପୋକମାଛି ଠାରୁ ହୀନ ଭାବେ ଦେଖୁଥିଲେ କଏଦୀଙ୍କୁ। ସେଠାକାର ସନ୍ତସନ୍ତିଆ ପରିବେଶକୁ କଏଦୀଙ୍କ ଦ୍ୱାରା ସଫା କରାଉଥିଲେ ଜେଲ୍‌ର। ଭଲ ଖାଇବାକୁ ବା ପିନ୍ଧିବାକୁ ମିଳୁନଥିଲା। ହାତ ଗୋଡ଼ରେ ଲୁହାର ଓଜନିଆ ଶିକୁଳି ପଡ଼ୁଥିଲା। ସେମାନଙ୍କ ଦ୍ୱାରା କଠିନ କାମ କରାଯାଉଥିଲା। ଅଳ୍ପ ବା ବିନା ଖାଦ୍ୟରେ କଠିନ ପରିଶ୍ରମ କରି ଅନେକ କଏଦୀ ଅବେଳରେ ଜୀବନ ହରାଉଥିଲେ। ସେମାନଙ୍କ ସମ୍ପର୍କରେ କେହି ବି କିଛି ଜାଣିପାରୁ ନଥିଲେ। ମାତ୍ର ସେଲୁଲାର ଜେଲକୁ ଯିବା ପରେ ନିଜର ଓ ଅନ୍ୟ କଏଦୀଙ୍କ ସୁବିଧା ପାଇଁ ସ୍ୱର ଉଠାଇଲେ ସଭରକର। ତାଙ୍କର ଜ୍ଞାନ ଆଗରେ ନିଷ୍ପ୍ରଭ ତତ୍କାଳୀନ ଜେଲର ମିଷ୍ଟର ବେରୀ ତାଙ୍କୁ ସବୁବେଳେ ଅପମାନିତ କରିବାକୁ ଚେଷ୍ଟା କରିଥିଲେ ହେଁ ସେଥିରେ ସଭରକର ପଛଘୁଞ୍ଚା ଦେଇନଥିଲେ। ତାଙ୍କ ଯୋଗୁଁ ସେଠାରେ କେତେକ ସଂସ୍କାର ଦେଖିବାକୁ ମିଳିଥିଲା, ଯାହାକି ଅନ୍ୟ କଏଦୀଙ୍କୁ ସାହାଯ୍ୟ କରିଥିଲା। ଖାଦ୍ୟ ପାନୀୟରେ କେତେକ ସୁବିଧା ମିଳିଥିଲା। ପରିଶ୍ରମରୁ ମଧ୍ୟ ମୁକ୍ତି ମିଳିଥିଲା।

ସେଲୁଲାର ଜେଲ୍‌ର କଏଦୀଙ୍କ କଠିନ ପରିଶ୍ରମ କଥା ଶୁଣିଲେ ଏବେ ବି ଲୋମ ଟାଙ୍କୁରି ଉଠେ। ସେଠାରେ ତେଲ ମିଲରେ କଏଦୀମାନଙ୍କୁ ଦିନରାତି ଖଟାଯାଉଥିଲା। କୋଲ୍ହୁ ଭାବେ ପରିଚିତ ଏହି କଏଦୀଙ୍କୁ ବଳଦଙ୍କ ସ୍ଥାନରେ ନିୟୋଜିତ କରାଯାଉଥିଲା। ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବାରେଲ ତେଲ ପେଡ଼ିବାକୁ ଧାର୍ଯ୍ୟ କରାଯାଉଥିଲା। ଯେଉଁମାନେ କରିପାରୁନଥିଲେ ସେମାନଙ୍କୁ ବେତ ପ୍ରହାର ଖାଇବାକୁ ପଡ଼ୁଥିଲା। ତେଲ ପେଡ଼ିବା ସହିତ କତା ଭିଡ଼ା ଓ ଜଙ୍ଗଲ ସଫା କାର୍ଯ୍ୟ କରୁଥିଲେ ଏହି କଏଦୀମାନେ। ସେଠାକାର ଜଙ୍ଗଲ କଥା କହିଲେ ନସରେ। ସେତେବେଳେ ସେ ସ୍ଥାନ ଥିଲା ଖୁବ୍ ସନ୍ତସନ୍ତିଆ। ଗଛର ପତ୍ର ତଳେ ରହୁଥିଲେ ଜୋକମାନେ। ଅନ୍ଧାରିଆ ଅଞ୍ଚଳ ଥିଲା ମଶାଙ୍କ ଘର। ତା ସହିତ ଅନ୍ୟାନ୍ୟ ଜଙ୍ଗଲି ଜାନୁଆରଙ୍କ ଅବାଧ ଚଳପ୍ରଚଳ। ଗଛ କାଟି ସଫା କରିବା ଭିତରେ ଦେହ ସାରା ଜୋକ ଲାଗି ଯାଉଥିଲେ। ମଶା ଝୁଣି ଖାଇ ଯାଉଥିଲେ। କେତେବେଳେ କେମିତି ଜଙ୍ଗଲୀ ଜାନୁଆର ବି ଜୀଅନ୍ତା ଟେକି ନେଉଥିଲେ। ଯେଉଁମାନେ ଏସବୁକୁ ପ୍ରତିରୋଧ କରି ସଂଧ୍ୟାକୁ ଫେରୁଥିଲେ ସେମାନଙ୍କ ଦେହ ରକ୍ତରେ ଜୁଡୁବୁଡ଼ୁ ହେଉଥିଲା। ଗାଧୋଇବାକୁ ମିଳୁଥିଲା ସମୁଦ୍ରର ଲୁଣି ପାଣି। ଖଣ୍ଡିଆ ଖାବରା ଶରୀରରେ ଲୁଣି ପାଣିର ଛିଟା। ସେଥିରେ ପୁଣି ପେଟ ଭରି ଖାଇବାକୁ ମିଳେନା। ବିଚରା କଏଦୀ ବଂଚି ମଧ୍ୟ ମଲାଭଳି ଜୀବନ କାଟିଥାଏ। କଏଦୀକୁ ଘର ତଥା ବାହାର ଦୁନିଆ ସହିତ ସମ୍ପର୍କ ରଖିବାକୁ ସୁଯୋଗ ମିଳୁନଥିଲା। ମଳମୂତ୍ର ତ୍ୟାଗର ସମୟ ନିର୍ଦ୍ଧାରିତ ହୋଇଥିଲା। ନିର୍ଦ୍ଧାରିତ ସମୟ ବାହାରେ ଯଦି କେହି ମଳମୂତ୍ର ତ୍ୟାଗ କରୁଥିଲେ ସେଥିପାଇଁ ତାଙ୍କୁ କଠୋର ଦଣ୍ଡ ଭୋଗିବାକୁ ପଡ଼ୁଥିଲା। କଏଦୀଙ୍କୁ ରଖା ଯାଉଥିବା କୋଠରୀ ଏତେ ଛୋଟ ଥିଲା ଯେ, ଜଣେ ସ୍ୱଚ୍ଛନ୍ଦରେ

ଗତି କରିପାରିବ ନାହିଁ। ସେଠାକାର ଜେଲର ହିନ୍ଦୁ, ମୁସଲିମ୍‌ଙ୍କ ମଧ୍ୟରେ ଧାର୍ମିକ ଆଧାରରେ ଭେଦଭାବ ସୃଷ୍ଟି କରାଇ ପରସ୍ପରର ଶତ୍ରୁ କରାଇ ଦେଉଥିଲେ। ଏଥିରେ ପରିବର୍ତ୍ତନ ଆଣି କଏଦୀଙ୍କ ପାଇଁ ସୁବିଧା କରିବାକୁ ସ୍ୱର ଉଠାଇଥିଲେ ସଭରକର। ଧୀରେ ଧୀରେ ତାଙ୍କ ସ୍ୱର ତୀବ୍ର ହୋଇଥିଲା। କଏଦୀମାନେ ତାଙ୍କୁ ଏଥିରେ ପୂର୍ଣ୍ଣ ସମର୍ଥନ କରିଥିଲେ। ଫଳରେ ଜେଲର ନିଷ୍ଠୁର ଆଇନ୍‌ରେ କିଛି ପରିବର୍ତ୍ତନ ହୋଇଥିଲା। କଏଦୀ ଆଶ୍ୱସ୍ତ ହୋଇଥିଲେ। ତାଙ୍କରି ପ୍ରଚେଷ୍ଟାରେ କଏଦୀଙ୍କ ପାଇଁ ଲାଇବ୍ରେରୀ କରାଯାଇଥିଲା।

ସେତେବେଳେ ସେଲୁଲାର ଜେଲରେ କଏଦୀଙ୍କ ଉପରେ ହେଉଥିବା ନିଷ୍ଠୁର ନିର୍ଯାତନା ସମ୍ପର୍କରେ କେହି କିଛି ଜାଣିପାରୁ ନଥିଲେ। ମାତ୍ର ସଭରକର ବିଭିନ୍ନ ଯୋଜନା କରି କଏଦୀଙ୍କ ନିର୍ଯ୍ୟାତନା ସମ୍ପର୍କୀୟ ତଥ୍ୟ ଗଣମାଧ୍ୟମକୁ ପଠାଇଲେ। ଗଣମାଧ୍ୟମରେ ଏହିସବୁ ନିର୍ଯ୍ୟାତନା କଥା ପ୍ରକାଶ ପାଇବା ପରେ ଭାରତରେ ଥିବା ସ୍ୱାଧୀନତା ସଂଗ୍ରାମୀମାନେ ଅଧିକ ସତର୍କ ହୋଇଉଠିଲେ। ସଂଗ୍ରାମୀ କଏଦୀଙ୍କ ମୁକ୍ତି ପାଇଁ ସେମାନେ ଇଂରେଜ ସରକାରଙ୍କ ଠାରେ ଦାବୀ ଉପସ୍ଥାପିତ କଲେ। ୧୯୨୦ରେ ସଭରକରଙ୍କ ନିଃସର୍ତ୍ତ ମୁକ୍ତି ପାଇଁ ଭାରତୀୟ ଜାତୀୟ କଂଗ୍ରେସ ଓ ଏହାର ବରିଷ୍ଠ ନେତା ମହାତ୍ମା ଗାନ୍ଧୀ, ବିଥଲଭାଇ ପଟେଲ, ବାଲ ଗଙ୍ଗାଧର ତିଳକ ପ୍ରମୁଖ ସରକାରଙ୍କ ନିକଟରେ ଦାବି କଲେ। ଭାରତରୁ ଚାପ ପଡ଼ିବା ପରେ ସଭରକରଙ୍କୁ ସେଲୁଲାର ଜେଲରୁ ମୁକ୍ତି ମିଳିଲା। ମାତ୍ର ତାଙ୍କୁ ସେଠାରୁ ଛଡା ଯାଇ ପ୍ରଥମେ ରତ୍ନଗିରି ଓ ପରେ ୟରଓ୍ୱାଡା ଜେଲରେ ରଖାଗଲା। ଶେଷରେ ୧୯୨୪ ମସିହା ଜାନୁଆରୀ ୬ ତାରିଖରେ ତାଙ୍କୁ ଜେଲରୁ ଖଲାସ କରି ଦିଆଯାଇଥିଲା।

ରାଧାଦେଈପୁର
ଢେଙ୍କାନାଳ
ପିନ– ୭୫୯୦୧୪

## ଗଣଶିକ୍ଷା ମନ୍ତ୍ରୀ ଦେବୀ ପ୍ରସାଦ ମିଶ୍ରଙ୍କ କେନ୍ଦ୍ର ମାନବ ସମ୍ବଳ ମନ୍ତ୍ରୀଙ୍କୁ ସାକ୍ଷାତ

ଶିକ୍ଷ, ସ୍କୁଲ ଓ ଗଣଶିକ୍ଷା ମନ୍ତ୍ରୀ ଦେବୀ ପ୍ରସାଦ ମିଶ୍ର କେନ୍ଦ୍ର ମାନବ ସମ୍ବଳ ମନ୍ତ୍ରୀ ଶ୍ରୀମତୀ ସ୍ମୃତି ଜୁବିନ୍ ଇରାନୀଙ୍କୁ ସାକ୍ଷାତ କରି ଭୁବନେଶ୍ୱରଠାରେ ଶିକ୍ଷା ସମ୍ବନ୍ଧୀୟ ଯୋଜନା ଓ ପ୍ରଶାସନର ଜାତୀୟ ବିଶ୍ୱବିଦ୍ୟାଳୟ (NUEPA)ର ଏକ ସମ୍ପ୍ରସାରିତ କେନ୍ଦ୍ର ପ୍ରତିଷ୍ଠା ତଥା ରାଜ୍ୟରେ ଗଣଶିକ୍ଷାର ଉନ୍ନତି ସମ୍ବନ୍ଧୀୟ ବିଭିନ୍ନ ବିଷୟ ଉପରେ ସବିଶେଷ ଆଲୋଚନା କରିଥିଲେ ।

ରାଜ୍ୟ ସରକାର NUEPA (National University of Educational Planning and Administration)ର ଏକ extension centre ପାଇଁ ସମସ୍ତ ସୁବିଧା ସୁଯୋଗ ପ୍ରଦାନ କରିବେ ବୋଲି ମନ୍ତ୍ରୀ ଶ୍ରୀ ମିଶ୍ର କେନ୍ଦ୍ର ମନ୍ତ୍ରୀଙ୍କୁ ଅବଗତ କରିଥିଲେ । ଯାହାଫଳରେ କି ଏହା ପୂର୍ବ ଭାରତରେ ଶିକ୍ଷା ପ୍ରଶିକ୍ଷଣ ଓ ଗବେଷଣା କ୍ଷେତ୍ରରେ ବିଶେଷ ସହାୟକ ହେବ । କେନ୍ଦ୍ରମନ୍ତ୍ରୀଙ୍କୁ ବିଭିନ୍ନ ପ୍ରସ୍ତାବ ଦେଇ ମନ୍ତ୍ରୀ ଶ୍ରୀ ମିଶ୍ର କହିଛନ୍ତି ଯେ ସର୍ବଶିକ୍ଷା ଅଭିଯାନ ପାଇଁ କେନ୍ଦ୍ର ସରକାର ଦେଉଥିବା ଆର୍ଥିକ ସହାୟତାକୁ ୬୫%ରୁ ୭୫%କୁ ବୃଦ୍ଧି କରିବା ଆବଶ୍ୟକତା ରହିଛି । ସେହିପରି ତ୍ରୟୋଦଶ ଅର୍ଥ କମିଶନ ରାଜ୍ୟ ପାଇଁ ଚଳିତ ବର୍ଷ ନିମନ୍ତେ ଆବଶ୍ୟକ ଅର୍ଥକୁ ଶୀଘ୍ର ଯୋଗାଇଦେବା ସହିତ ୨୦୧୨–୧୩ ମସିହାରେ ୨୦୪ କୋଟି ଟଙ୍କା ମଧ୍ୟ ପ୍ରଦାନ କରିବାକୁ କହିଛନ୍ତି । ରାଜ୍ୟରେ ଥିବା ୪୭୭୫୫ଟି ସ୍କୁଲରେ ମଧ୍ୟାହ୍ନ ଭୋଜନ ରନ୍ଧନ ଏବଂ Dining hall ନିର୍ମାଣ ସହିତ ନିରାପଦ LPG ଗ୍ୟାସ ଯୋଗାଣ ବ୍ୟବସ୍ଥା କରିବା ବାବଦରେ ୧୫ଶହ କୋଟି ଟଙ୍କା ପ୍ରଦାନ କରିବା ଉପରେ ମଧ ମନ୍ତ୍ରୀ ଶ୍ରୀ ମିଶ୍ର ଗୁରୁତ୍ୱ ଆରୋପ କରିଥିଲେ । ରାଜ୍ୟରେ ଅନେକ ଦୁର୍ଗମ ଓ ଆଦିବାସୀ ଅଧୁଷିତ ଅଞ୍ଚଳ ରହିଥିବାରୁ ଶ୍ରେଣୀ ହିସାବରେ ଖାଲି ପଡିଥିବା ଶିକ୍ଷକ ପଦବୀଗୁଡ଼ିକୁ ପୂରଣ କରିବା ପାଇଁ ମନ୍ତ୍ରୀ ଶ୍ରୀ ମିଶ୍ର କେନ୍ଦ୍ର ମନ୍ତ୍ରୀଙ୍କୁ ଦାବି ଜଣାଇଛନ୍ତି । ଓଡ଼ିଶାରେ ମଦ୍ରାସାଗୁଡିକର ଆଧୁନିକୀକରଣ ପାଇଁ IDMI ଯୋଜନା ବାବଦରେ ୧୦,୮୮,୭୨,୪୦୦ଟଙ୍କା ଯୋଗାଇଦେବା ପାଇଁ କେନ୍ଦ୍ର ମନ୍ତ୍ରୀ ଶ୍ରୀମତୀ ଇରାନୀଙ୍କଠାରେ ଶ୍ରୀ ମିଶ୍ର ଦାବି ଜଣାଇଛନ୍ତି । କେନ୍ଦ୍ର ମନ୍ତ୍ରୀ ଏହିସବୁ ଦାବିଗୁଡ଼ିକ ବିଚାର କରି ଶୀଘ୍ର ପଦକ୍ଷେପ ନେବେ ବୋଲି ପ୍ରତିଶ୍ରୁତି ଦେବା ସହିତ ରାଜ୍ୟରେ ଗଣଶିକ୍ଷା କ୍ଷେତ୍ରରେ ଯେପରି ସମୁଚିତ ଅଗ୍ରଗତି ହେବ ସେ ବିଷୟ ପ୍ରତି ଧ୍ୟାନ ଦେବେ ବୋଲି କହିଛନ୍ତି ।

ତପନ ଦାସ, ସୂଚନା ଅଧିକାରୀ

# ଓଡ଼ିଆ ପାଇକ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଓଡ଼ିଶା ପ୍ରାଚୀନ ରାଜ୍ୟ । ଏହାର ଅନ୍ୟନାମ ଉତ୍କଳ ଓ କଳିଙ୍ଗ । ରାମାୟଣ ମହାଭାରତଠାରୁ ଆରମ୍ଭ କରି ସଂସ୍କୃତରେ ରଚିତ ପ୍ରତ୍ୟେକ ପୁରାଣରେ ଓଡ଼ିଶାର କଥା ବର୍ଣ୍ଣିତ ହୋଇଛି । ବିଶେଷଭାବେ ଓଡ଼ିଆଙ୍କ ବୀରତ୍ୱ ଓ ଓଡ଼ିଶାର ସଂସ୍କୃତି କଥା ବର୍ଣ୍ଣନା କରାଯାଇଛି । ସାହିତ୍ୟ ଓ କଳା ଚର୍ଚ୍ଚାରେ ଓଡ଼ିଶା ଯେପରି ଉତ୍କର୍ଷ ଆଣିପାରିଥିଲା, ବାଣିଜ୍ୟ ଓ କୃଷିର ଉନ୍ନତିରେ ସେହିପରି ଶ୍ରେଷ୍ଠ ସ୍ଥାନରେ ପହଞ୍ଚି ପାରିଥିଲା । ଭାସ୍କର୍ଯ୍ୟ ଓ ନୌବାଣିଜ୍ୟ ପାଇଁ ସାରା ବିଶ୍ୱରେ ଉତ୍କଳର ସୁନାମ ଥିଲା । ଆଉ ଓଡ଼ିଆ ପୁଅ ଥିଲା ବୀର ଓ ସାହସୀ । ଯଥାର୍ଥରେ 'ସାହିତ୍ୟ ଦର୍ପଣ'ର ରଚୟିତା ବିଶ୍ୱନାଥ କବିରାଜ କହିଛନ୍ତି – 'କଳିଙ୍ଗା ସାହସିକାଃ ।' ଓଡ଼ିଆମାନେ ବୀର ଓ ଯୋଦ୍ଧା । ତଥାପି ଶତ୍ରୁକୁ ଯଦି ଥରେ କ୍ଷମା ଦେଲେ କି ଆଶ୍ରୟ ଦେଲେ ତେବେ ଜୀବନ ଚାଲିଗଲେ ସୁଦ୍ଧା ମତ ପରିବର୍ତ୍ତନ କରିପାରୁନଥିଲେ ।

ଓଡ଼ିଶାର ସ୍ୱାଭିମାନ ତଥା ସଂସ୍କୃତିର ପ୍ରତୀକ ହେଉଛନ୍ତି ଶ୍ରୀଜଗନ୍ନାଥ । ଜଗନ୍ନାଥ ସଂସ୍କୃତି ହିଁ ଓଡ଼ିଶାର ଜୀବନ ଧାରା । ଓଡ଼ିଶାର ରକ୍ଷକ ହେଉଛନ୍ତି ଓଡ଼ିଆ ପାଇକ । ଏମାନେ ଓଡ଼ିଶାର ସ୍ୱୟଂସେବକ ସୈନିକ । ରାଜାଙ୍କଦ୍ୱାରା ପୂରା ସମୟ ପାଇଁ ସୈନିକ ନିଯୁକ୍ତି ପାଇ ଛାଉଣୀରେ ରହୁଥିଲେ । ମାତ୍ର ପାଇକମାନେ ସୈନିକ ହେଲେ ହେଁ ସେମାନେ ଗାଁଗଣ୍ଡାରେ ରହୁଥିଲେ । ନିୟମିତ ଆଖଡ଼ା ଘରେ ଯୋଗଦେଇ ସମର କୌଶଳ ତଥା ଶରୀରଚର୍ଚ୍ଚା ଅଭ୍ୟାସ ରଖୁଥିଲେ । ପାଇକମାନେ ସ୍ୱେଚ୍ଛାରେ ରାଜ୍ୟର ସୁରକ୍ଷା ନିମନ୍ତେ ନିଜକୁ ନିୟୋଜିତ କରୁଥିଲେ । ସେମାନଙ୍କୁ ରାଜା ବାଧ୍ୟ କରୁନଥିଲେ । ପିତାମାତା ପୁତ୍ରକୁ ପାଇକ ହେବା ପାଇଁ ଶିକ୍ଷା ଦେଉଥିଲେ । ଯଦି ପରିବାରରୁ ଜଣେ ପାଇକ ହୋଇ ଯାଉଥିଲା, ସେହି ପରିବାର ସମାଜରେ ସମ୍ମାନିତ ହେଉଥିଲେ । ପରିବାର ଲୋକେ ଗର୍ବ ଅନୁଭବ କରୁଥିଲେ । ଦେଶ ଓ ଜାତି ପାଇଁ ଓଡ଼ିଆ ପାଇକ ନିଜକୁ ଉତ୍ସର୍ଗ କରି ଦେଉଥିଲେ । ରାଜ୍ୟର ଶାନ୍ତି ସମୟରେ ପାଇକମାନେ କୃଷିରେ ନିଜକୁ ନିୟୋଜିତ କରିଦେଉଥିଲେ । ଶ୍ରୀମନ୍ଦିର ସହିତ ରାଜ୍ୟର ଯେତେ ମଠ, ମନ୍ଦିର ସେସବୁର ରକ୍ଷକ ଥିଲେ ପାଇକ । ଯେଉଁ ପାଇକମାନେ ମନ୍ଦିର ସୁରକ୍ଷା କରୁଥିଲେ, ସେମାନଙ୍କୁ 'ବରକନ୍ଦାଜ' କୁହାଯାଉଥିଲା ।

ଐତିହାସିକମାନେ କୁହନ୍ତି, ଓଡ଼ିଆ ପାଇକମାନେ ଅତ୍ୟନ୍ତ ଦୁର୍ଦ୍ଧର୍ଷ ଓ ଦେଶଭକ୍ତ । ଏହି ପାଇକମାନଙ୍କ ସହାୟତାରେ ଓଡ଼ିଶାର ଗଙ୍ଗବଂଶ, ସୂର୍ଯ୍ୟବଂଶ ଓ ଭୋଇ ବଂଶ ଶାସକମାନେ ବହୁରାଜ୍ୟ ଜୟକରି, ଭାରତବର୍ଷରେ ସୁନାମ ଅର୍ଜନ କରିଥିଲେ । ଚଣ୍ଡାଶୋକର ଆକ୍ରମଣକୁ ପ୍ରତିରୋଧ କରିଥିଲେ । ଲକ୍ଷାଧିକ ଓଡ଼ିଆ ପାଇକ ନିଜର ମୁଣ୍ଡବଳି ଦେଇଥିଲେ ହେଁ ବଶ୍ୟତା ସ୍ୱୀକାର କରିନଥିଲେ । ଏମାନେ ବୀର ଖାରବେଳଙ୍କୁ ସମ୍ରାଟ କରାଇବାରେ ସମସ୍ତ ପ୍ରକାର ସହାୟତା ପ୍ରଦାନ କରିଥିଲେ ।

ରାଜା, ପାଇକମାନଙ୍କ ପାଇଁ ଭୂସଂପତ୍ତି ବ୍ୟବସ୍ଥା କରିଥିଲେ ହେଁ ପୂର୍ଣ୍ଣ ସମୟ ପାଇଁ ରାଜାଙ୍କ ଅଧୀନରେ ଏମାନେ ପଡ଼ି ରହୁନଥିଲେ । ରାଜ୍ୟରେ ବିପଦ ଦେଖାଦେଲେ, ଯୁଦ୍ଧ ଲାଗିଲେ ହଜାର ହଜାର ସଂଖ୍ୟାରେ ପାଇକ ନିର୍ଦ୍ଦେଶମାତ୍ରେ ଏକଜୁଟ ହୋଇ ଯାଉଥିଲେ । ଅନ୍ୟ ସମୟରେ ନିଜ ନିଜର କୌଳିକ ବୃତ୍ତି କରିବା ସହିତ କୃଷି, ବାଣିଜ୍ୟ ଓ ଶିଳ୍ପ କାର୍ଯ୍ୟରେ ନିଜକୁ ନିୟୋଜିତ କରୁଥିଲେ । ଯିଏ ଯେଉଁକାମ କରୁନା କାହିଁକି ପ୍ରତ୍ୟେକ ଗ୍ରାମରେ ସ୍ୱତନ୍ତ୍ର ବ୍ୟାୟାମଶାଳା ଥିଲା । ଏହାକୁ 'ଜାଗାଘର' ବା ଆଖଡ଼ା ଘର କୁହାଯାଉଥିଲା । ସେଠାରେ ଶାରୀରିକ ଶିକ୍ଷା ଓ ଯୁଦ୍ଧାଭ୍ୟାସ କରାଯାଉଥିଲା । ସାମରିକ ବାଦ୍ୟର ତାଳେ ତାଳେ କୁସ୍ତି କସରତ ଓ ବାଡ଼ି ବୁଲାଇବା ଅଭ୍ୟାସ କରୁଥିଲେ । ସାଂପ୍ରତିକ ସମସ୍ୟା ଉପରେ ବିଚାରବିମର୍ଶ କରିବା ସହିତ ପରିସ୍ଥିତି ପ୍ରତି ସତର୍କ ରହୁଥିଲେ ।

ଆବଶ୍ୟକ ପଡ଼ିଲେ ଘରୁ ନିଜର ଅସ୍ତ୍ର ଧରି, ସେନାପତିଙ୍କ ନିକଟରେ ପହଞ୍ଚି ଯାଉଥିଲେ । ସେନାଧ୍ୟକ୍ଷଙ୍କ ପରାମର୍ଶକ୍ରମେ ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୋଇ ଯାଉଥିଲେ । ରାଜାଙ୍କ ନିକଟରେ ଯେତିକି ଦରମାପ୍ରାପ୍ତ ନିୟମିତ ସୈନିକ ଥିଲେ, ତାର ଦଶଗୁଣ ଜାଗିରିଭୋଗୀ ସ୍ୱେଚ୍ଛାସେବୀ ପାଇକ ରାଜ୍ୟରେ ଥିଲେ । ଫଳରେ ବୀର ଓଡ଼ିଆ ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଅଞ୍ଚଳକୁ ସ୍ୱଅଧିକାରରେ ରଖିପାରିଥିଲେ ।

ଓଡ଼ିଶାର ପାଇକ ତିନି ଭାଗରେ ବିଭକ୍ତ ଥିଲେ । ୧. ପ୍ରହରୀ, ୨. ବାଣୁଆ, ୩. ଢେଙ୍କିଆ । ପ୍ରହରୀମାନେ ଖଣ୍ଡା ବ୍ୟବହାର କରୁଥିଲେ ଓ ରାଜ୍ୟର ସୁରକ୍ଷା ନିମନ୍ତେ ଜଗୁଆଳ କାର୍ଯ୍ୟ କରୁଥିଲେ । ବାଣୁଆମାନେ ଧନୁଶରଦ୍ୱାରା ଶର ନିକ୍ଷେପ କରି ଶତ୍ରୁ ସଂହାର କରୁଥିଲେ ଓ ଢେଙ୍କିଆମାନେ ଖଣ୍ଡା ଓ ଠେଙ୍ଗା ବ୍ୟବହାର କରୁଥିଲେ । ଯୁଦ୍ଧ ସମୟରେ ତିନିପ୍ରକାର ସୈନ୍ୟରେ ବିଭକ୍ତ ହୋଇଯାଉଥିଲେ ।

୧. ପଦାତିକ, ୨. ଅଶ୍ୱାରୋହୀ, ୩. ଗଜାରୋହୀ । ଏମାନଙ୍କ ଅସ୍ତ୍ର ଥିଲା ଖଣ୍ଡା, କଟାରି, ଢାଲ, ତରବାରୀ, ବର୍ଚ୍ଛା, ତୀର, ଧନୁ ଓ ବାଟୁଳିଖଡ଼ା ।

ଶାନ୍ତି ସମୟରେ ପାଇକମାନେ ଫରିକଛା ମାରି ଲୁଗା ପିନ୍ଧୁଥିଲେ । ଦେହରେ ଅଙ୍ଗୀ, ମୁଣ୍ଡରେ ପଗଡ଼ି ବା ଟୋପି, ମଥାରେ ସିନ୍ଦୂର କଲି, ବଡ଼ ବଡ଼ ମୁଛ ଓ ଦାଢ଼ି, ହାତରେ ଛାତିଏ ଉଚ୍ଚର ଠେଙ୍ଗା । ଯୁଦ୍ଧ ସମୟରେ ମୁଣ୍ଡରେ ବାଘ ଚମଡ଼ାର ଟୋପି, ଶରୀରରେ ଶିକୁଳି ବନ୍ଧା ଧାତୁର ବର୍ମ ବ୍ୟବହାର କରୁଥିଲେ । ସେମାନେ ଦେହରେ ହଳଦିଆ ମାଟି ଓ ମୁହଁରେ ସିନ୍ଦୂର ବୋଳି ଯୁଦ୍ଧରେ ଯୋଗ ଦେଉଥିଲେ । ପାଇକମାନେ ପାଦରେ ଚମଡ଼ା ନିର୍ମିତ ଜୋତା ପିନ୍ଧୁଥିଲେ । ଓଡ଼ିଶାର ମନ୍ଦିର ଗାତ୍ରରେ ଥିବା ପାଇକମାନଙ୍କର ଖୋଦିତ ମୂର୍ତ୍ତି ଜୋତା ପିନ୍ଧିଥିବା କଥା ସୂଚାଉଛି । ପାଇକମାନଙ୍କର ବେଶ ସମ୍ବନ୍ଧରେ ପାଇକ ଖେଦାମାନଙ୍କରେ ଉଲ୍ଲେଖ ଅଛି–

ବାମେ ଯମ ଦାଢ଼ ଡାହାଣେ ତୋତାର ଜାତି
କର୍ଣ୍ଣରେ କୁଣ୍ଡଳ ଭାଇ ଭୈରବ ମୂରତି ।।
ଦୁର୍ଗା ଦେଲେ କାଛଟା କାଳିକା ଦେଲେ କାଳୀ
ମାଟି ପିଣ୍ଡରେ ମାଟି ଭାଇ ହୋଇ ଅଛି ବୋଳି ।।
ଈଶ୍ୱରଙ୍କ ସିଂହ ଦଣ୍ଡାରୁ ଆଡ଼ବନ୍ଧ ହୋଇ
ବାନଓର ମାଳା ବହିଲୁ ତହିଁ ଭାଇ ।।
ବାସୁକି ବୋଲିଣ ଯେ ଅଟଇ ଏକ ନାଗ
ସେ ଆସି ମଥାରେ ମୋର ହୋଇ ଅଛି ପାଗ ।।

ଐତିହାସିକ ଷ୍ଟାଲିନ କହିଛନ୍ତି ଓଡ଼ିଶାର ପାଇକମାନେ ମୋଗଲ ଓ ମରାଠା ସୈନ୍ୟଙ୍କଠାରୁ ଅଧିକ ଦୁର୍ଦ୍ଧର୍ଷ ଥିଲେ । ଐତିହାସିକ ଆବୁଲ ଫାଜଲ ତାଙ୍କ ବିବରଣୀରେ ଲେଖି ଯାଇଛନ୍ତି ଯେ କେବଳ କଟକ ଓ ମେଦିନପୁର ଜିଲ୍ଲାରେ ଏକ ଲକ୍ଷ ପଞ୍ଚାବନ ହଜାର ଓଡ଼ିଆ ପାଇକ ଥିଲେ । ସେମାନଙ୍କୁ ଜାଗିରି ପ୍ରଦାନ କରାଯାଉଥିଲା । ପାଇକ ହେବା ପାଇଁ କୌଣସି ଜାତିଗତ କଟକଣା ନଥିଲା । ବ୍ରାହ୍ମଣ, କରଣ, ଚଷା, ପାଣ, କଣ୍ଡରା, ବାଉରି ଏପରିକି ମୁସଲମାନମାନେ ମଧ୍ୟ ପାଇକ ହୋଇପାରୁଥିଲେ । ଓଡ଼ିଶାର ଅଧିପତି ଅନଙ୍ଗଭୀମ ଦେବଙ୍କ ସମୟରେ ଓଡ଼ିଶାର ସାମରିକ ଶକ୍ତି ବିଷୟରେ ମାଦଳାପାଞ୍ଜିରେ ଉଲ୍ଲେଖ ଅଛି– 'ଏଥିକୁ ମହାରାଜାଙ୍କୁ ଫଉଜ ଖଟନ୍ତି, ଦନ୍ତମଣ୍ଡା ମାଗୁନା ହାତୁଣୀ ମଧ୍ୟ ୨୫୦୦ ଘର, ଚଉଦ ପ୍ରତିରେ ରାଉତ ଘୋଡ଼ା ବାଖର–୨୦୦୦୦ ହଜାର ଜାଣୁଆ, ବାଣୁଆ, ଧନୁକୀ, ପଡ଼ିକାର, ଇଟିକାର ମଧ୍ୟ ପାଇକ ୩୦୦୦୦ ହଜାର ଜଣ ।'

ଓଡ଼ିଆ ବୀର ଜାତି । ଏଣୁ ବୀର ଉପାଧି ରାଜାମାନେ ଗ୍ରହଣ କରିଥିଲେ । ମାଦଳାପାଞ୍ଜିରୁ ଜଣାଯାଏ, ରାଜା ଅନଙ୍ଗଭୀମ ଦେବଙ୍କର ଉପାଧି ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ ଉତ୍କଳ ବର୍ଗେଶ୍ୱର ଅଭିରାଏ ଭୂତ ଭୈରବ ଦୁଃସହ ଦୁଃଶାସନ ଅନି କରଣେ ରାଉତରାୟ ଅତୁଳବଳ ପରାଗ୍ରମ ସଂଗ୍ରାମ ସହସ୍ରବାହୁ ଧୂମକେତୁ ବୋଲି ଥିଲା । କବି ଭଂଜ ନିଜକୁ ବୀରବର ଉପେନ୍ଦ୍ର ବୋଲି ପରିଚିତ କରାଉଥିଲେ । ରାଜା ପାଇକମାନଙ୍କର କର୍ମ କୁଶଳତାରେ ମୁଗ୍ଧ ହୋଇ ଉପାଧିମାନ ପ୍ରଦାନ କରୁଥିଲେ । ସେ ସବୁ ବୀରତ୍ୱବ୍ୟଞ୍ଜକ ଥିଲା । ଏହିସବୁ ଉପାଧି ଆଲୋଚନା କଲେ ଜାଣିହେବ ପାଇକମାନଙ୍କ ପୂର୍ବ ପୁରୁଷମାନେ କିପରି ବଳଶାଳୀ ଓ ଯୋଦ୍ଧା ଥିଲେ । ଏଠାରେ ଅସଂଖ୍ୟ ଉପାଧି ଭିତରୁ ମାତ୍ର କେତୋଟି ଉପାଧି ଉଲ୍ଲେଖ କରାଗଲା । ରାଉତ, ରାଉତରାୟ, ମାହୁନ୍ତ, ସିଂହ, ବଳିଆର ସିଂହ, ଝପଟସିଂହ, କୋଦମାସିଂହ, ବାହୁବଳେନ୍ଦ୍ର, ପାଇକରାୟ, ଭୁଜବଳ, ରଣସିଂହ, ପାହାଡ଼ସିଂହ, ଦକ୍ଷିଣ କବାଟ, ମହାରଥୀ, ପର୍ଶ୍ଚିମକବାଟ, ସେନାପତି, ବାହିନୀପତି, ନାୟକ, ପଟ୍ଟନାୟକ, ଚମ୍ପତିସିଂହ, ଗଡ଼ନାୟକ, ମାନସିଂହ, ଶତ୍ରୁସଲ, କହଲ ସିଂହ, ରାୟସିଂହ, ମାନଧାତା, ପାଲଟା ସିଂହ, ବୀରବର ଓ ରାଟ ସିଂହ ପ୍ରଭୃତି । ଆମେ ଓଡ଼ିଆମାନେ ଏବେ ନିଷ୍କ୍ରିୟ, ମାତ୍ର ହୀନବଳ ନୋହୁଁ । ଓଡ଼ିଆ ଜାତିକୁ ସୁସଂଗଠିତ କରିବାକୁ ହେବ । ସେଥିପାଇଁ ଜାତୀୟ ସ୍ତରରେ ଥିବା ଜାତୀୟତାବାଦୀ ସ୍ୱଦେଶୀ ଚିନ୍ତାଧାରାର ପ୍ରବକ୍ତାମାନେ ଏହି ମହାନ୍ ଜାତିକୁ ପୁନଃ ଉତ୍‌ଥାନରେ ସହଯୋଗ

କରିବା ଉଚିତ । କର୍ପୂର ସିନା ଉଡ଼ିଯାଇଛି, ଅଳ୍ପ ଅଳ୍ପ ସୁବାସ ବହନ କରୁଥିବା କନାଖଣ୍ଡକ ତ ପଡ଼ି ରହିଛି । ସିଂହ ଶିଶୁ କଦାପି ଶୃଗାଳ ହୋଇ ପାରେନା, ପରିବେଶ ଓ ସ୍ୱାସ୍ଥ୍ୟଗତ କାରଣରୁ ଦୁର୍ବଳ ହୋଇଯାଇ ପାରେ ସିନା । ଆଜିର ଓଡ଼ିଆ ନିସ୍ପୃହ ତଥା ସବୁକ୍ଷେତ୍ରରେ ପଛୁଆ ହୋଇଯିବା ଦିଗରେ କେତେକ କାରଣ ଅଛି । ଖ୍ରୀ:ଅ: ୧୬୦୭ରୁ ଖ୍ରୀ:ଅ: ୧୮୦୪ ପର୍ଯ୍ୟନ୍ତ ଏ ଜାତି ମୁହୂର୍ତ୍ତେ ଶାନ୍ତିରେ ନିଃଶ୍ୱାସ ମାରି ପାରି ନାହିଁ । ବର୍ବର ମୋଗଲ, ପଠାଣ ଓ ମରହଟ୍ଟାମାନେ ବାରମ୍ବାର ଓଡ଼ିଶା ଆକ୍ରମଣ ତଥା ଲୁଣ୍ଠନ କରି ଏ ଜାତିର ମେରୁଦଣ୍ଡକୁ ଦୋହଲାଇ ଦେଇଛନ୍ତି । ଓଡ଼ିଆ ଜାତିର କଳା, ସଂସ୍କୃତି ଓ ବାଣିଜ୍ୟ ବାଧାପ୍ରାପ୍ତ ହୋଇଛି । ତା'ପରେ ଆସିଛନ୍ତି ଇଂରେଜ । ସେମାନେ ଦେଖିଛନ୍ତି ଓଡ଼ିଆମାନେ ଭାରତର ସବୁଠାରୁ ଦୁର୍ଦ୍ଧର୍ଷ ଜାତି । ସେମାନେ ଓଡ଼ିଆମାନଙ୍କୁ ସବୁକ୍ଷେତ୍ରରେ ପଛୁଆ ରଖି, ମନୋବଳ ଓ ଉତ୍ସାହକୁ ଭାଙ୍ଗି ଦେଇଛନ୍ତି । ନହେଲେ ଖଣ୍ଡାୟତ ପାଇକର ଖଣ୍ଡା କଦାପି ଦୁର୍ବଳ ନୁହେଁ । ବିପଦ ଆସିଲେ ଓଡ଼ିଆ ପାଇକ ସାହସର ସହିତ ମୁକାବିଲା କରିପାରେ, ବିବ୍ରତ ହୁଏ ନାହିଁ । ଶ୍ରୀଜଗନ୍ନାଥଙ୍କୁ ନିଜର ନେତା ରୂପେ ତଥା ସେନାପତି ବୋଲି ସ୍ମରଣ କରି ରାଜ୍ୟରକ୍ଷା ତଥା ଧର୍ମରକ୍ଷା ନିମନ୍ତେ ରଣାଙ୍ଗନକୁ ଫରିକଚ୍ଛା ମାରି ଡେଇଁ ପଡ଼ନ୍ତି ଓଡ଼ିଆମାନେ ।

ଯେଉଁ ଆଫଗାନିସ୍ଥାନ ସନ୍ତ୍ରାସବାଦ ପରିବ୍ୟାପ୍ତ କରି ଆମେରିକାକୁ ଭୟଭୀତ କରିଛି ସେହି କାବୁଲର ଯବାନମାନେ ଦିନେ ଓଡ଼ିଆ ପାଇକ ପୁଅମାନଙ୍କଠାରୁ ଶୋଚନୀୟ ଭାବରେ ପରାସ୍ତ ହୋଇଥିଲେ । ଏସବୁ ଘଟଣା ଓଡ଼ିଶାର ଶାସକ ବଜ୍ରଦେବଙ୍କ (ଖ୍ରୀ:ପୂ:୫୩୮ରୁ ଖ୍ରୀ:ପୂ:୪୨୧) ସମୟର କଥା । କେବଳ ସେତିକି ନୁହେଁ ରାଜା ମନକୃଷ୍ଣ ଦେବ (ଖ୍ରୀ:ପୂ:୩୦୬)ଙ୍କ ରାଜତ୍ୱ ସମୟରେ କାଶ୍ମୀର ଦେଶର ଯବାନମାନେ ଓଡ଼ିଶାଠାରୁ ପରାସ୍ତ ହୋଇଥିଲେ । ଦୁଇହଜାର ବର୍ଷ ପୂର୍ବେ ଓଡ଼ିଆ ଜାତି ସମଗ୍ର ପୃଥିବୀରେ ଅପରାଜେୟ ବୀର ଜାତି ରୂପେ ପରିଗଣିତ ହେଉଥିଲେ । ମହାରାଜା ମୁକୁନ୍ଦଦେବ (ଖ୍ରୀ:ଅ:୧୫୫୧ରୁ ଖ୍ରୀ:ଅ:୧୫୫୯)ଙ୍କ ସମୟରେ ସୁଲତାନ ଇବ୍ରାହିମ ଦିନେ ପଳାଇ ଆସି ଓଡ଼ିଶାରେ ଆଶ୍ରୟ ନେଇଥିଲେ । ବାରମ୍ବାର ଆଫଗାନ୍‌ମାନେ ଓଡ଼ିଶା ଆକ୍ରମଣ କରିଛନ୍ତି ଓ ପରାସ୍ତ ହୋଇଛନ୍ତି । ହଣ୍ଟର ସାହେବ ତାଙ୍କ ଇତିହାସରେ ଉଲ୍ଲେଖ କରିଛନ୍ତି– ଧର୍ମ ପରାୟଣ ଓଡ଼ିଶା ସବୁକିଛି ସହିପାରେ, ମାତ୍ର ହିନ୍ଦୁଧର୍ମ ଓ ଦେବଦେବୀଙ୍କ ଉପରେ ଆକ୍ରମଣକୁ କଦାପି ବରଦାସ୍ତ କରିପାରିବ ନାହିଁ । ଏହା ହେଉଛି ତାର ମୌଳିକ ପ୍ରତିକ୍ରିୟା । ଏଣୁ ଓଡ଼ିଆ ବିଦ୍ରୋହୀ ଓ ବିପ୍ଳବୀ । ସେ ପୁଣି ଉଲ୍ଲେଖ କରିଛନ୍ତି – ରାଜା ରାମଚନ୍ଦ୍ରଙ୍କ ଅମଳରେ ସେ ୨୨୯ ଗୋଟି ଦୁର୍ଗର ଅଧିପତି ଥିଲେ ଓ ତାଙ୍କର ୩୫୦୦ ଅଶ୍ୱ ଥିଲେ । ପଦାତିକ ସୈନ୍ୟଙ୍କ ସଂଖ୍ୟା କ'ଣ ଅବା କହିବା । ବର୍ତ୍ତମାନ ଖଣ୍ଡ, ପାଇକ, ମହାଲାଏକ ପ୍ରଭୃତି ଜାତିମାନଙ୍କ ବସତିପ୍ରତି ଦୃଷ୍ଟି ଦେଲେ ସହଜରେ ଜଣାଯିବ । ଅଧିକାଂଶ ଗ୍ରାମରେ ପଦାତିକ ସୈନ୍ୟ ଥିଲେ ।

ଅବୁଲ ଫଜଲଙ୍କ ଭାରତ ଭ୍ରମଣ ଇତିହାସ ଓ 'ଆଇନ ଆକବରୀ'ରୁ ଜଣାଯାଏ ଯେ କେବଳ କଳିଙ୍ଗ ଦଣ୍ଡପାଟ, କାଇମାନ, ରାଜମାହେନ୍ଦ୍ରୀ ଓ ନାରାୟଣପୁରରେ ୫୮୨୦ ଅଶ୍ୱାରୋହୀ ଓ ୫୮୧୧୦ ପଦାତିକ ସୈନ୍ୟ ଥିଲେ । କୋଟରାହାଙ୍ଗ ଦୁର୍ଗରେ ୬୮୭୮ ଅଶ୍ୱାରୋହୀ ଓ ୧୬୦୧୬୦ ପଦାତିକ ଗଜପତିଙ୍କ ସୈନ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ଏଥିରୁ ଓଡ଼ିଆମାନଙ୍କର ତତ୍କାଳିକ ସାମରିକ ବଳ ସହଜରେ ଅନୁମାନ କରିହେବ । ଓଡ଼ିଆ ଦୁର୍ଦ୍ଧର୍ଷ ବୀରଜାତି, ମାତ୍ର ସେ ନିଜର ବୀରତ୍ୱ ଦେଖାଇବାକୁ ଯାଇ କଦାପି ଅନ୍ୟ ଜାତି ଉପରେ ପାଶବିକ ଅତ୍ୟାଚାର କରିନାହିଁ । ଧର୍ମ ଯୁଦ୍ଧର ନିୟମ ଉଲଙ୍ଘନ କରି ନାହିଁ । କାଞ୍ଚି ବିଜୟର କାରଣ ଅନ୍ୟମାନଙ୍କ ପାଇଁ ସାମାନ୍ୟ ହେଲେ ସୁଦ୍ଧା ଓଡ଼ିଆର ପ୍ରାଣସତ୍ତା ଶ୍ରୀଜଗନ୍ନାଥଙ୍କ ଅବମାନନା ତା' ପକ୍ଷରେ ଅସହ୍ୟ ହୋଇଉଠିଛି, ତଥାପି କାଞ୍ଚି ରାଜଜେମାଙ୍କୁ ସେ ଓଡ଼ିଶାର ମହାରାଣୀର ମର୍ଯ୍ୟାଦା ପ୍ରଦାନ କରିଛି । ଓଡ଼ିଆ ଓ ଓଡ଼ିଶାର ଶୌର୍ଯ୍ୟ, ବୀର୍ଯ୍ୟ କଥା ଉଲ୍ଲେଖ ଅଛି, ଯାହାକି ଆଜିର ଓଡ଼ିଆ କଳ୍ପନା ସୁଦ୍ଧା କରିନପାରେ । ଦିଗ୍‌ବିଜୟ ବିଷୟରେ ବର୍ଣ୍ଣନା କରାଯାଇଛି ।

ବଦ୍ଧମୁଷ୍ଟିରପି ନିର୍ଭର ଦାତା
ବେପନୋଦ୍ଧପି ସମରୈକଧୁରୀଣଃ
ଉଗ୍ରମୂର୍ତ୍ତିରପି କୃଷ୍ଣ – ଶରୀରୋ
ଯତ୍କରେଣକ (ବ) ରିତଃ କରବାଳଃ (ନରସିଂହ)

ଅର୍ଥାତ୍ ତାଙ୍କ ହସ୍ତରେ ତରବାରୀ ମୁଷ୍ଟିବଦ୍ଧ ହେଲେ ମଧ୍ୟ ନିର୍ଭରଦାତା, ଯଦ୍ୟପି ସଦାକମ୍ପମାନ ତଥାପି ସମରକ୍ଷମ ଏବଂ ଭୀଷଣାକାର ହେଲେ ହେଁ କୃଷ୍ଣ ଶରୀର ଅର୍ଥାତ୍ କୃଷ୍ଣଙ୍କ ପରି ମୋହନ ରୂପ ଅଟେ । ପାଇକମାନଙ୍କର ଯୁଦ୍ଧ କୌଶଳ ବର୍ଣ୍ଣନା କରାଯାଇ କେତେଗୋଟି ପୁସ୍ତକ ଓଡ଼ିଆ ଭାଷାରେ ଓ ସଂସ୍କୃତ ଭାଷାରେ ଲିଖିତ ହୋଇଅଛି । ସେଗୁଡ଼ିକ ହେଲା – କହ୍ନାଇ ଚମ୍ପତିରାୟଙ୍କର 'ପାଇକଖେଦା', ଗୋବିନ୍ଦ ସାମନ୍ତରାୟଙ୍କର 'ବୀର ସର୍ବସ୍ୱ' ଓ ଗୋଦାବରୀଶ ମିଶ୍ରଙ୍କର 'ହରିହର ଚତୁରଙ୍ଗ' । ଏସବୁ ପୁସ୍ତକରେ ଓଡ଼ିଆ ପାଇକମାନଙ୍କ ବୀରତ୍ୱ ଓ କୃତିତ୍ୱ ବର୍ଣ୍ଣନା କରାଯାଇ ଓଡ଼ିଆ ଯୁଦ୍ଧ କୌଶଳରେ ଓଡ଼ିଆ ପାଇକର ଭୂମିକା ନିର୍ଣ୍ଣୟ କରାଯାଇଛି ।

ସଂପାଦକ, ପୁରାଣ ପତ୍ରିକା
ନିଆଳୀ – ୭୫୪୦୦୪, କଟକ

# ମୁକ୍ତିର ମହାକବି ଭୀମଭୋଇ

**ଡକ୍ଟର ହୁସେନ ରବିଗାନ୍ଧୀ**

ସଂପ୍ରତି ''ଆଧୁନିକ ଓଡ଼ିଆ କାବ୍ୟଧାରାର ପ୍ରବର୍ତ୍ତକ କ'ଣ ରାୟବାହାଦୂର ରାଧାନାଥ ରାୟ କି ?'' ଉପରେ ବିତର୍କ ଆରମ୍ଭ ହୋଇଯାଇଛି । ସ୍ୱାଧୀନତା ପୂର୍ବରୁ କିଛି ଅଧ୍ୟାପକ ଓ ଇଂରେଜ ଭକ୍ତ ଲେଖକ ରାଧାନାଥ ରାୟଙ୍କୁ ଆଧୁନିକ ଓଡ଼ିଆ କାବ୍ୟଧାରାର ଆଦ୍ୟ ପ୍ରବର୍ତ୍ତନ ଭାବେ ଗ୍ରହଣ କରି ଅନେକ ପୁସ୍ତକ ଓ ଅନେକ ଆଲେଖ୍ୟ ରଚନା କରି ପ୍ରକାଶିତ କରିଥିଲେ । ସ୍ୱାଧୀନତା ପରେ ମଧ୍ୟ ଆମ ସାହିତ୍ୟର ସଂଖ୍ୟାଧିକ ଆଲୋଚକ ଏହି ଧାରାଟିକୁ ସମର୍ଥନ କରି ଆସିଲେ । ସତ କହିବାକୁ ଗଲେ, ଆମ ସାହିତ୍ୟରେ ଅଧିକାଂଶ ଆଲୋଚକ ''ଆଧୁନିକତା କାହାକୁ କୁହାଯାଏ'', ସେ ସମ୍ପର୍କରେ ବିଶେଷ ଧାରଣା ରଖନ୍ତି ନାହିଁ । ସମାଜର ଆର୍ଥିକ ବିଭକ୍ତିକରଣର ପ୍ରଭାବ ଯେ ସାହିତ୍ୟରେ ଦେଖିବାକୁ ମିଳିଥାଏ, ତାକୁ ଅଧିକାଂଶ ଆଲୋଚକ ସ୍ୱୀକାର କରନ୍ତି ନାହିଁ । କାରଣ, ସମାଜର ଶ୍ରେଣୀ ବିଭାଗକୁ ଏହି ତଥାକଥିତ ବୁଦ୍ଧିଜୀବୀ ଏବଂ ଆଲୋଚକମାନେ ଦେଖି କରି ମଧ୍ୟ ଅଦେଖା କରିଥାନ୍ତି । ଏହି ବୁଦ୍ଧିଜୀବୀ ଓ ମସୀଧାରୀମାନେ ସମାଜର ଉଚ୍ଚବର୍ଗ (ଯଥା ଉଚ୍ଚବର୍ଣ୍ଣ ବା ସଂଭ୍ରାନ୍ତଶ୍ରେଣୀ)ର ପ୍ରତିନିଧିତ୍ୱ କରନ୍ତି । ଆଧୁନିକତାର ଅର୍ଥ ହେଉଛି, ସମାଜରେ ପ୍ରଚଳିତ କୁବିଶ୍ୱାସକୁ ମୂଲ୍ୟବୋଧ, ସାମାଜିକ ଭେଦାଭେଦ, ଅସାମ୍ୟ ବା ଅନୈକ୍ୟ ବିରୁଦ୍ଧରେ ସ୍ୱର ଉଠାଇ ନିଜ ଲେଖନୀରେ ତାକୁ ଚିତ୍ରଣ କରିବା, ତାକୁ ପ୍ରତିବାଦ ଓ ପ୍ରତିରୋଧ କରିବା,



ଲୋକସାଧାରଣଙ୍କୁ ଅସାମ୍ୟ ଅନୈକ୍ୟ ବିରୁଦ୍ଧରେ ସଙ୍ଗଠିତ ହେବାକୁ ନିଜ ଲେଖନୀ ମାଧ୍ୟମରେ ଆହ୍ୱାନ ଜଣାଇବା । ଆମ କଥା ସାହିତ୍ୟର ଜନକ ଫକୀର ମୋହନ ହିଁ ଥିଲେ ଓଡ଼ିଶାର ସାମାଜିକ ଦୁର୍ବଳ ବର୍ଗର ଅନନ୍ୟ ପ୍ରତିନିଧି । ତାଙ୍କ ଉପନ୍ୟାସ ''ଛ'ମାଣ ଆଠଗୁଣ୍ଠ''ର ଦୁଇ ପ୍ରମୁଖ ଚରିତ୍ର–ସାରିଆ ଓ ଭଗିଆ, ଓଡ଼ିଶାର ଶ୍ରେଣୀ ବିଭକ୍ତ ତଥା ଜାତି ବିଭକ୍ତ ସମାଜରେ ଦରିଦ୍ର, ଶୁଦ୍ର ସଂପ୍ରଦାୟର ନିଚ୍ଛକ ପ୍ରତିନିଧିତ୍ୱ କରନ୍ତି । ''ଲଛମା'' ଉପନ୍ୟାସରେ ମରହଟ୍ଟା ବର୍ଗୀମାନଙ୍କର ମୁକାବିଲା କରିବାକୁ କୌଣସି ସଂଭ୍ରାନ୍ତ ରାଜା ବା ସାମନ୍ତ ଆସିନାହାନ୍ତି । ସାମାନ୍ୟ ଚାଷୀ (ଖଣ୍ଡାୟତ) ସଂପ୍ରଦାୟରୁ ଆସିଥିବା ଚରିତ୍ର ହିଁ ଏହି ସାହସ କରିଛି ଏବଂ ସଫଳ ହୋଇଛି । '' ରାଣ୍ଡିପୁଅ ଅନନ୍ତା'' ଗଳ୍ପର ନାୟକ ଉଦ୍ଦଣ୍ଡ ଗଉଡ ଟୋକା ଅନନ୍ତା ସାରା ଗାଁକୁ ବନ୍ୟାର କରାଳ କବଳରୁ ରକ୍ଷା କରିବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛି । ଫକୀର ମୋହନ କେଉଁଠାରେ ବି ରାଜା, ରାଣୀ, ଜମିଦାର, ସଂଭ୍ରାନ୍ତ ଅଥବା ଉଚ୍ଚବର୍ଣ୍ଣଙ୍କର ମୁଖପାତ୍ର ସାଜି ନାହାନ୍ତି । ଅଥଚ ଏଇ କଥା ଆମେ ରାୟବାହାଦୂର ରାଧାନାଥ ରାୟଙ୍କ କାବ୍ୟ–କବିତାରେ ଦେଖିବାକୁ ପାଉନା । ''ଦରବାର'' କାବ୍ୟ ବ୍ୟତୀତ ଅନ୍ୟତ୍ର ତାଙ୍କ ସାହିତ୍ୟ ସଂଭ୍ରାନ୍ତ ଶ୍ରେଣୀର ହିଁ ସପକ୍ଷରେ ରଚିତ ହେବାପରି ଲାଗୁଛି । ''ମହାଯାତ୍ରା''(ଅସଂପୂର୍ଣ୍ଣ ଖଣ୍ଡକାବ୍ୟ)ରେ ସେ

ଜାତୀୟତାର କିଛିଟା ଆଭାଷ ଦେବାକୁ ଚେଷ୍ଟା କରିଥିଲେ ବି ଉକ୍ତ ଜାତୀୟତା ଆଭିଜାତ୍ୟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥିଲା । ଫକୀର ମୋହନଙ୍କ ପରି ସେ ନିଃଷ୍ପେସିତ ଶ୍ରେଣୀ ପାଇଁ କିଛି ବି ଲେଖି ନାହାନ୍ତି । କବି ହରପ୍ରସାଦ ଦାସ ତେଣୁ ଯଥାର୍ଥରେ ରାୟବାହାଦୁର ରାଧାନାଥ ରାୟଙ୍କୁ ମଧ୍ୟଯୁଗୀୟ ରୀତିକାଳୀନ କାବ୍ୟଧାରାର ଶେଷ କାବ୍ୟକାର ବୋଲି ତାଙ୍କର 'ଓଡ଼ିଆ ଜାତିର ଇତିବୃତ୍ତି' ଧାରାବାହିକ ପ୍ରବନ୍ଧମାନଙ୍କରେ ଠାଏ ମତପ୍ରକାଶ କରିଛନ୍ତି । ମଧ୍ୟଯୁଗୀୟ ରୀତିକାଳ ହେଉଛି ସାମନ୍ତବାଦୀ ଓ ପ୍ରତିକ୍ରିୟାଶୀଳ ସ୍ଥିତାବସ୍ଥା, ବର୍ଣ୍ଣ ବ୍ୟବସ୍ଥାବାଦୀ ସାମାଜିକ ବ୍ୟବସ୍ଥାର ପ୍ରତିଛବି । ଏହି ଛବିରୁ ରାୟବାହାଦୁର ରାଧାନାଥ ଊର୍ଦ୍ଧ୍ୱକୁ ଯାଇପାରିନାହାନ୍ତି । ତେଣୁ ରାଧାନାଥ ଆଧୁନିକ କାବ୍ୟଧାରାର ପ୍ରବର୍ତ୍ତକ ନୁହନ୍ତି ବୋଲି ସାଂପ୍ରତିକ ପ୍ରଗତିବାଦୀ କାବ୍ୟ ଚେତନା ସମ୍ପୂର୍ଣ୍ଣ ଆଲୋଚକମାନେ ଏକମତ । ଅବଶ୍ୟ ଏହାକୁ ଉଚ୍ଚବର୍ଣ୍ଣର ପ୍ରତିକ୍ରିୟାଶୀଳ ଆଲୋଚକମାନେ ଖଣ୍ଡନ କରିଥାନ୍ତି ଓ ବ୍ରିଟିଶ ସରକାରଙ୍କ ସପକ୍ଷବାଦୀ ରାଧାନାଥଙ୍କୁ ଆଧୁନିକ କାବ୍ୟକଳାର ଆଦ୍ୟ ପ୍ରବର୍ତ୍ତକ ବୋଲି ଏବେ ବି ମନେ କରନ୍ତି ।

ଏଠାରେ ବିଚାର କରିବାର କଥା ହେଉଛି ଯେ, ଆଧୁନିକତାର ଅର୍ଥ କ'ଣ ?

ଆଧୁନିକତାର ଅର୍ଥ କହିଲେ ପ୍ରଗତିଶୀଳ ଆଲୋଚକମାନେ ଯାହା କହନ୍ତି ସ୍ଥିତାବସ୍ଥାର ସମର୍ଥକମାନେ ସେଥିରେ ଏକମତ ହୁଅନ୍ତି ନାହିଁ । ହଜାର ହଜାର ବର୍ଷ ପୁରାତନ ଉଚ୍ଚ, ନୀଚ, ସଂଭ୍ରାନ୍ତ, ଦରିଦ୍ର, ସ୍ପୃଶ୍ୟ, ଅସ୍ପୃଶ୍ୟ ସମାଜ ବ୍ୟବସ୍ଥାକୁ ସବୁଦିନ ପାଇଁ କାଏମ୍ ରଖିବାକୁ ସମର୍ଥନ କରୁଥିବା ବୁଦ୍ଧିଜୀବୀଙ୍କ ସହିତ ଯେଉଁମାନେ ଏକମତ ହୋଇପାରନ୍ତି ନାହିଁ, ସେମାନେ ସମାଜ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ପାଇଁ ଖାଲି ବିଚାର ଉପସ୍ଥାପିତ କରନ୍ତି ନାହିଁ, ବରଂ ସେଥିପାଇଁ ସକ୍ରିୟ ଭାବେ କାର୍ଯ୍ୟ ମଧ୍ୟ କରିଥାନ୍ତି ।

ଆଧୁନିକତା ହେଉଛି, ଶୋଷଣ ବିହୀନ, ଜାତିବିହୀନ, ସାମନ୍ତବାଦୀ–ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥା ଭିତରେ ନିଷ୍ପେସିତ ଅବସ୍ଥାରେ ଥିବା ଶୋଷିତ, ଦଳିତ, ଅବହେଳିତ ମଣିଷ ପାଇଁ ମୁଖପାତ୍ର ରୂପେ କାର୍ଯ୍ୟ କରୁଥିବା ସମୟ ଏବଂ ଏହି ସମୟରୁ ସୃଷ୍ଟି ସାହିତ୍ୟ, କଳା, ରାଜନୀତି ଓ ସାମାଜିକ ବ୍ୟବସ୍ଥା । ଆଧୁନିକ ବିଚାରର ପରିପ୍ରକାଶ ହେଉଛି ଗତାନୁଗତିକତାକୁ ପରିହାର କରି ପରିବର୍ତ୍ତନ ସପକ୍ଷରେ ଏକ କ୍ରାନ୍ତିକାରୀ ଭୂମିକା ନିର୍ବାହ କରିବା ।

ଓଡ଼ିଆ ସାହିତ୍ୟର ଘୋର ସାମନ୍ତବାଦୀ, ଜାତିଆଣବାଦୀ ପର୍ଯ୍ୟାୟ ଭିତରେ ଜଗନ୍ନାଥ ଦାସ, ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଥିଲେ ଅନେକ ପରିମାଣରେ ସଂସ୍କାରଧର୍ମୀ ଏବଂ ଗତାନୁଗତିକଠାରୁ ଯଥେଷ୍ଟ ଊର୍ଦ୍ଧ୍ୱରେ । ସେମାନେ ବର୍ଣ୍ଣବ୍ୟବସ୍ଥା ବିରୁଦ୍ଧରେ କାର୍ଯ୍ୟ କରିଥିଲେ ନିଜର ସାରସ୍ୱତ ସୃଷ୍ଟି ମାଧ୍ୟମରେ । ଏପରିକି ମଧ୍ୟଯୁଗୀୟ ପୁରୋହିତବାଦ ଓ ସାମନ୍ତବାଦ ସହ ସେମାନଙ୍କ ସାହିତ୍ୟ ସାଲିସ୍ କରିନାହିଁ ।

ତା'ପରେ ମଧ୍ୟଯୁଗୀୟ ରୀତିକାଳରେ ଏହି ନୀରବ ପ୍ରତିରୋଧର ସ୍ୱର ପ୍ରତିବାଦରେ ପରିଣତ ହୋଇଥିଲା ଏବଂ କବି ଦୀନକୃଷ୍ଣ ସାମନ୍ତବାଦ ବିରୁଦ୍ଧରେ କ୍ରାନ୍ତିକାରୀ, ଐତିହାସିକ ପରିଭାଷା ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ । ଦୀନକୃଷ୍ଣ ଦାସଙ୍କର ସେହି କ୍ରାନ୍ତିକାରୀ ଉଚ୍ଚାରଣ: ''କବି ଯା'କରେ ମୂର୍ଖକୁ ସ୍ତୁତି/ଏଥିକୁ ପ୍ରତି ନାହିଁ ବିପତ୍ତି/ଏଥିକି ପ୍ରତିକୁ ଛାତିରେ କାତି ମାରିବା ଭଲ ଯେ...'' । ଆମ ଭାଷା ସାହିତ୍ୟରେ ସାମନ୍ତବାଦ/ଉଚ୍ଚବର୍ଣ୍ଣବାଦ ବିରୁଦ୍ଧରେ ପ୍ରଥମ ବୈପ୍ଳବିକ ଆଲେଖ୍ୟ ।

କବି ଦୀନକୃଷ୍ଣଙ୍କ ଠାରୁ ରାଧାନାଥ ରାୟଙ୍କ କାଳ ଭିତରେ ପ୍ରାୟ ୨୫୦ରୁ ଅଧିକ ବର୍ଷର ସମୟ ବିତି ଯାଇଛି । ସାମନ୍ତବାଦକୁ କବଳିତ କରିଛି ସାମ୍ରାଜ୍ୟବାଦ । ସାମ୍ରାଜ୍ୟବାଦ ଆସିଛି ଆର୍ଥିକ ଶୋଷଣ ଓ ରାଜନୈତିକ ପରାଧୀନତା ସହିତ ସମସ୍ତ ଅବକ୍ଷୟ ତଥା ସ୍ଖଳନକୁ ନିଜ ଭିତରେ ଦୃଢ଼ ଭାବେ ଜାବୁଡ଼ି ଧରି ଶୋଷଣ ଓ ଉତ୍ପୀଡ଼ନ ପାଇଁ ସ୍ଥାନୀୟ ରାଜା, ଜମିଦାର, ସାମନ୍ତ, ସାହୁକାର ତଥା ସଂଭ୍ରାନ୍ତମାନଙ୍କର ଏକ ପାପ–ଚକ୍ର ସୃଷ୍ଟି କରାଇ, ସଂଖ୍ୟାଧିକ ମେହନତୀ ପ୍ରଜାଙ୍କ ସର୍ବସ୍ୱ ଅପହରଣ କରି ନିଜର ନିହିତ ସ୍ୱାର୍ଥ ଓ ଆର୍ଥିକ ମୁନାଫାକୁ କାଏମ୍ ରଖିବା ପାଇଁ ଏହି ସାମ୍ରାଜ୍ୟବାଦୀ ଶକ୍ତି ସବୁବେଳେ ଉଦ୍ୟମ କରିଛି । ଏହି ପାପ–ଚକ୍ରର କୁପରିଣାମ ସଦୃଶ ଉଚ୍ଚଶ୍ରେଣୀର ଲୋକଙ୍କ ଭିତରେ ନୈତିକତାର ସ୍ଖଳନ, ମାନବବାଦୀ ସଂସ୍କୃତିର ଅବକ୍ଷୟ ଓ ସମାଜରେ ସମାନତାର ବିଲୋପ ଘଟିଛି । ଏହି ସାମାଜିକ ବ୍ୟବସ୍ଥା ଭିତରେ ସବୁଠାରୁ ଅଧିକ ଦୟନୀୟ ପରିସ୍ଥିତିର ସମ୍ମୁଖୀନ ହୋଇଛି ଆମ ସମାଜର ଦଳିତ (ଅସ୍ପୃଶ୍ୟ) ଏବଂ ବଣ–ପର୍ବତ କୋଳରେ ପ୍ରତିପାଳିତ ପ୍ରକୃତିର ସନ୍ତାନ ଆଦିବାସୀ ସଂପ୍ରଦାୟ ।

ଊନଂବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଯେତେବେଳେ ରାୟବାହାଦୁର ରାଧାନାଥ ଇଂରେଜମାନଙ୍କ ସାମ୍ରାଜ୍ୟବାଦୀ ସରକାର ଅଧୀନରେ ଏକ ଉଚ୍ଚପଦବୀରେ ଆସୀନ ଥିଲେ, ସେତେବେଳେ ଉପକୂଳବର୍ତ୍ତୀ ଓଡ଼ିଶା ଠାରୁ ବହୁଦୂରରେ ପ୍ରାକୃତିକ ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରେ ଘୋର ବଣ–ଜଙ୍ଗଲ ପରିପୂର୍ଣ୍ଣ ଇଲାକାର ଏକ ସୈରାଚାରୀ ଓ ଅତ୍ୟାଚାରୀ ରାଜତନ୍ତ୍ର ଦ୍ୱାରା

ଶାସିତ ଛୋଟ ଗୋଟିଏ ଅନଗ୍ରସର, ଅନ୍ଧକାରମୟ ଗଡଜାତ ରାଜ୍ୟ ରେଢାଖୋଲ ଅଞ୍ଚଳରେ ଗୋଟିଏ କନ୍ଧଯୁବକ ଗାଈ, ମଇଁଷି ଚରାଉ ଚରାଉ ବନବାସୀ ଓ ଦଳିତଙ୍କର ପ୍ରାଣକର୍ତ୍ତାରେ ରୂପାନ୍ତରିତ ହୋଇଯାଇଥିଲେ । ସେ କନ୍ଧ ଯୁବକ ମହାନ ବିପ୍ଳବୀ କବି ଭୀମ ଭୋଇ ହିଁ ଥିଲେ ।

ଭୀମ ଭୋଇ ୧୮୪୨ ସାଲରେ ରେଢାଖୋଲ ରାଜ୍ୟରେ ଆବିର୍ଭାବ ହୋଇଥିଲେ ଏବଂ ସୋନପୁର ଗଡଜାତ (ବର୍ତ୍ତମାନର ସୁବର୍ଣ୍ଣପୁର ଜିଲ୍ଲା) ଅନ୍ତର୍ଗତ ଖଲିଆପାଲୀ ଗ୍ରାମରେ ୧୮୯୫ ସାଲରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କେବଳ ରେଢାଖୋଲର ବନବାସୀ ବା ଦଳିତମାନଙ୍କ ପାଇଁ ସେ ମୁକ୍ତିର ଖଞ୍ଜଣି ବଜାଇ ନଥିଲେ, ସେ ସମଗ୍ର ମାନବଜାତି ମଧ୍ୟରେ ଥିବା ସମସ୍ତ ଦଳିତ, ନିଷ୍ପେସିତ, ଅତ୍ୟାଚାରିତ, ଆର୍ତ୍ତ ପ୍ରାଣୀଙ୍କ ଅପ୍ରମିତ ଦୁଃଖ, କଷ୍ଟ ଲାଘବ କରିବା ପାଇଁ ନୂଆ ଚିନ୍ତନ, ନୂଆ ଦର୍ଶନର ବ୍ୟାଖ୍ୟାକାର ଭାବେ ଆତ୍ମପ୍ରକାଶ କରିଥିଲେ । ମହାମନୀଷୀ ମହିମା ଗୋସେଇଁଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ କିଶୋର ଭୀମ ଦଳିତ ବନବାସୀ ଓ ସକଳ ଆର୍ତ୍ତଜନଙ୍କର ତ୍ରାପରେ ରୂପାନ୍ତରିତ ହେଲେ । ସେ ତତ୍କାଳୀନ ସମାଜର ଉଚ୍ଚ,ନୀଚ, ଧନୀ, ଦରିଦ୍ର ଏବଂ ସର୍ବୋପରି ରାଜତନ୍ତ୍ରକୁ ପ୍ରତ୍ୟାଖ୍ୟାନ କରିବାକୁ ଜନସାଧାରଣଙ୍କୁ ଆହ୍ୱାନ ଦେଲେ । ପୁରୋହିତବାଦ, ମୂର୍ତ୍ତିପୂଜା, ପ୍ରଚଳିତ ଧର୍ମଧାରଣା ଇତ୍ୟାଦିକୁ ଅସ୍ୱୀକାର କଲେ । ମାନବଜାତିର ଐକ୍ୟକୁ ପ୍ରତିଷ୍ଠା କରିବା ପାଇଁ ମାନବିକ ସାମ୍ୟଭାବର ଉଦ୍‌ଘୋଷଣା କଲେ ଏବଂ ଏହି କ୍ରାନ୍ତିକାରୀ କାର୍ଯ୍ୟ ପାଇଁ ସେ କାବ୍ୟ–କବିତାକୁ ମାଧ୍ୟମ କରି ଆମ ଭାଷା–ସାହିତ୍ୟରେ ଆଧୁନିକତାର ଆଦ୍ୟ ପ୍ରବର୍ତ୍ତକ–ଅର୍ଥାତ୍ ସାଧାରଣ ମଣିଷର ଭାଷ୍ୟକାର ଭାବରେ ପୂଜନୀୟ ତଥା ଅବିସ୍ମରଣୀୟ ସାରସ୍ୱତ ସ୍ରଷ୍ଟା ହୋଇଗଲେ । ସେ ବ୍ରାହ୍ମଣବାଦ ଓ ରାଜତନ୍ତ୍ରକୁ ଅସ୍ୱୀକାର ଏହି ବୃତ୍ତିସହ ସମ୍ପୃକ୍ତ ବ୍ୟକ୍ତିମାନଙ୍କ ଘରେ ଭୋଜନ ନକରିବା ପାଇଁ ଲୋକମାନଙ୍କୁ କହି ଗଲେ ।

ଏହି ସମୟଠାରୁ ଶହ ଶହ ବର୍ଷ ପୂର୍ବରୁ ସେ ଜନ୍ମଗ୍ରହଣ କରିଥିଲେ । ସେଇଥିପାଇଁ ତ ସେ ଉଦାତ୍ତ କଣ୍ଠରେ ଘୋଷଣା କଲେ– ''ରାଜାର ପରଜା ନୋହୁଁ ସିନା ଆମ୍ଭେ/ନୋହୁଁ ସାହୁର ଖାତକ/ଯହିଁ ଗୁରୁନେବେ, ତହୁଁ ଯାଉ ଆମ୍ଭେ/କେ ଅବା କରୁ ଅଟକ'' (ସ୍ତୁତି ଚିନ୍ତାମଣି, ଚଉଷଠି ବୋଲି) ।

ଆମ ସମୟର ଜଣେ ସଂଭ୍ରାନ୍ତ ଶ୍ରେଣୀର ଖୋଲା ସମର୍ଥକ ଓ ଅନୁଦାରବାଦୀ ଆଲୋଚକ/ସ୍ରଷ୍ଟା କବି ଡକ୍ଟର ମାୟାଧର ମାନସିଂହ ଭୀମଭୋଇଙ୍କୁ ଆଦିବାସୀଙ୍କ କବି ବୋଲି ନିଜର ଓଡ଼ିଆ ଭାଷାର ଇତିହାସରେ ଲେଖିଲେ: ହେଲେ କିଛି ଯାଏ ଆସେନା, କାରଣ ଭୀମ ଭୋଇ ଯଦି ଆଦିବାସୀ କବି, ତେବେ ମାନସିଂହ ରକ୍ଷଣଶୀଳ, ଶୋଷକ, ସାମନ୍ତବାଦୀ ଶ୍ରେଣୀର କବି ନିଶ୍ଚୟ ? ହେଲେ ଏହି କନ୍ଧ ଆଦିବାସୀ ଭୀମ ଭୋଇ ସକଳ ମାନବଜାତି ମଧ୍ୟରେ ଥିବା ସବୁ ଦଳିତ ଓ ନିଷ୍ପେସିତଙ୍କ ମୁକ୍ତି ବାର୍ତ୍ତା ଘୋଷଣା କରି ନିଜେ ନର୍କକୁ (ଅର୍ଥାତ୍ ଯନ୍ତ୍ରଣାର ଚରମ ସ୍ଥିତିକୁ) ଯିବା ପାଇଁ ପ୍ରସ୍ତୁତ ହୋଇଗଲେ । କାହିଁ କୌଣସି ରାୟବାହାଦୂରଙ୍କ କଲମରୁ ମାନବ ଜାତିର ପରିତ୍ରାଣ ପାଇଁ ଏପରି ଆଲେଖ୍ୟ କେଉଁଠାରେ ତ ଆମର ଦୃଷ୍ଟି ଗୋଚର ହେଲା ନାହିଁ ?

ଅବଶ୍ୟ ଜଣେ ଅଧେ ଭକ୍ତ କବିମାନେ ମହାରାଣୀ ଭିକ୍ଟୋରିଆମାନଙ୍କ ଜୟଗାନର କବିତା ଲେଖି ଅମର ହେଲେତ ରାୟବାହାଦୂରମାନେ ରାଜା, ମହାରାଜାଙ୍କୁ ନିଜ କାବ୍ୟ–କବିତା ପୁସ୍ତକ ଉତ୍ସର୍ଗ କରି ଆର୍ଥିକ ତଥା ସାମାଜିକ ସୁବିଧା ହାସଲ ପାଇଁ ତତ୍ପର ହେଲେ । ଏବେ ଯେପରି କିଛି ସଂଭ୍ରାନ୍ତ ସ୍ରଷ୍ଟା କେନ୍ଦ୍ର ବା ରାଜ୍ୟ ଏକାଡେମୀମାନଙ୍କ ପୁରସ୍କାର ପାଇବା ପାଇଁ କୌଣସି କୌଣସି ସାରସ୍ୱତ ସାମ୍ମୁଖ୍ୟ ବା କୌଣସି ସମ୍ବାଦପତ୍ରର ଜାତିଆଣବାଦୀ, ସାଂପ୍ରଦାୟିକବାଦୀ ସଂପାଦକମାନଙ୍କୁ କିମ୍ବା ସେମାନଙ୍କ ପିତା/ଶ୍ୱଶୁରମାନଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ପ୍ରତିଯୋଗିତା କରୁଛନ୍ତି, ଭୀମ ଭୋଇଙ୍କ ସମୟରେ (ଅର୍ଥାତ୍ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ) ଆଜିର ଏଇ ତୋଷାମଦକାରୀ ପରମ୍ପରାର ମୂଳଦୁଆ ସ୍ଥାପନ କରାଯାଇଥିଲା ସାମ୍ରାଜ୍ୟବାଦୀ–ସାମନ୍ତବାଦୀ–ଜାତିଆଣବାଦୀ ସମାଜ ବ୍ୟବସ୍ଥା ଭିତରେ ।

କ୍ରାନ୍ତି ଦ୍ରଷ୍ଟା, ମହାନ୍ ସ୍ରଷ୍ଟା ଭୀମ ଭୋଇ ସେଇଥିପାଇଁ ନିଜ ସମୟଠାରୁ ଯଥେଷ୍ଟ ପୂର୍ବରୁ  ଜନ୍ମ ଗ୍ରହଣ କରିଥିଲେ । ତେଣୁ ତାଙ୍କୁ ରେଢାଖୋଲ ରାଜାଙ୍କ ଉଆସ ସାମ୍ନାରେ ବ୍ରାହ୍ମଣମାନଙ୍କ ପ୍ରରୋଚନାକ୍ରମେ ରାଜାଙ୍କ ଆଦେଶରେ ପ୍ରଚଣ୍ଡ ଗ୍ରୀଷ୍ମର ମଧ୍ୟାହ୍ନରେ ହରିକାଠାରେ ବନ୍ଧା ଯାଇ ବେତ୍ରାଘାତ କରାଯାଇଥିଲା ମୂର୍ତ୍ତିପୂଜାକୁ ନିନ୍ଦା କରୁଥିବା ମାନବଜାତିର ସମାନତା ସପକ୍ଷରେ ପ୍ରଚାର କରୁଥିବା, ବର୍ଣ୍ଣବ୍ୟବସ୍ଥା ବିରୁଦ୍ଧରେ ଜନଜାଗରଣ କରାଉଥିବା ଅପରାଧରେ । ତଥାପି ଭୀମଭୋଇ ବଜ୍ରକଣ୍ଠରେ ଘୋଷଣା କରିଥିଲେ– ''ଘଟରେ ବ୍ରହ୍ମକୁ ନଚିହ୍ନି/ବାହାରେ ଭ୍ରମୁଥାନ୍ତି ପ୍ରାଣୀ/ଚିତ୍ରପଟ୍ଟକୁ ନେତ୍ରେ ଦେଖି/ ମନ ଆନନ୍ଦେ ଭୋଇ ସୁଖୀ/ ଏଘଟେ ଜଗନ୍ନାଥ ଅଛି/ ପ୍ରତିମା ମିଛରେ ପୂଜୁଛି ।''

ନିଜେ ଦୀନ, ଦୁଃସ୍ଥ, ଦଳିତ, ସର୍ବହରା ହୋଇଥିଲେ ବି କ୍ରାନ୍ତିକାରୀ ପୁରୁଷ ସିଂହ ଭୀମ ଭୋଇ ନିଷ୍ପେସିତ ମଣିଷମାନଙ୍କ

